# ସ୍ମୃତି ଅର୍ଘ୍ୟ



୰ଡଃ. ପ୍ରସନ୍ନ କୁମାର ମିଶ୍ର

ଆର୍ବିଭାବ : ୨୬.୦୨.୧୯୪୩ । ତିରୋଧାନ : ୨୭.୦୬.୨୦୨୨

# ସ୍ମୃତି ଅର୍ଘ୍ୟ



## ✓ ଡଃ. ପ୍ରସନ୍ନ କୁମାର ମିଶ୍ର

ଆବିର୍ଭାବ : ୨୭.୦୨.୧୯୪୩ ତିରୋଧାନ : ୨୭.୦୭.୨୦୨୨

# ସ୍ମୃତି ଅର୍ଘ୍ୟ

୨୭.୦୬.୨୦୨୩


| | |
|---|---|
| ସଂପାଦନା | ଡଃ ସତ୍ୟଭାମା ପତି |
| | ଶ୍ରୀ ଚର୍ତୁଭୁଜ ପଣ୍ଡା |
| | ଶ୍ରୀ ସବ୍ୟସାଚି ମିଶ୍ର |
| ଅକ୍ଷର ସଜ୍ଜା | କଲର କନ (ଯୋଗି), ଶହିଦ ନଗର |
| ମୁଦ୍ରଣ | ହର ପାର୍ବତୀ ଗ୍ରାଫିକ୍ସ, ଶହୀଦ ନଗର |

# FOREWARD



People don't die when they stop breathing. They die when we stop talking about them. One year ago, today, Ma lost Bapa, her companion for life. Since that day Ma has kept Bapa alive. Recollecting days from their 47 years together. Reminiscing about his irritating eccentricities. Reminding us of his kindness and his steadfast principles.

Ma has not been alone in ensuring Bapa lives on. My brother, his family, my sister, her family, my uncles, their families, Bapa's friends, his colleagues, his students, they have all come together to help Ma in her effort to make sure Bapa lives on in our memories forever.

This book that you hold in your hands today is a result of this very collective effort.

Within the pages of this book you shall meet Dr. Prasanna Kumar Mishra, the historian, the teacher, the husband, the father, the friend and the stellar human being that he was.

Do read this book and keep Bapa alive in your memories. For Ma, for this book is as much about Dr. Prasanna Kumar Mishra, as it is about Ma's love for Bapa.

***Sambit Mishra***
***(Chhunu)***

# ସୂଚୀପତ୍ର

*ପ୍ରକାଶନ ଉଦ୍ଦେଶ୍ୟରେ ଶେଷ ପ୍ରବନ୍ଧ*

# ନ'ଅଙ୍କ ବିଦ୍ରୋହ

*ଡଃ ପ୍ରସନ୍ନ କୁମାର ମିଶ୍ର*

୧୮୬୬ ମସିହାର ଦୁର୍ଭିକ୍ଷକୁ ନ'ଅଙ୍କ ଦୁର୍ଭିକ୍ଷ କୁହାଯାଏ। କାରଣ ପୁରୀ ଗଜପତି ଦିବ୍ୟସିଂହ ଦେବଙ୍କ ନବମ ଅଙ୍କରେ ଏହା ଦେଖାଦେଇଥିଲା। ଏହି ଦୁର୍ଭିକ୍ଷ ଥିଲା ମନୁଷ୍ୟକୃତ। ପୁରୀ ଜିଲ୍ଲା ସବୁଠାରୁ ବେଶୀ କ୍ଷତିଗ୍ରସ୍ତ ହୋଇଥିଲା। ତା'ପଛକୁ କଟକ ଓ ବାଲେଶ୍ୱର ଜିଲ୍ଲା, ଅବଶ୍ୟ କିଛି ଗଡଜାତ ରାଜ୍ୟରେ ଏହାର ଭୟାବହତା ଅନୁଭୂତ ହୋଇଥିଲା। ଖୋର୍ଦ୍ଧାର ପାଇକମାନେ ବେଶୀ କ୍ଷତି ସହିଥିଲେ। ତେଣୁ ସେମାନେ ୧୮୧୭ ମସିହାର ବିଦ୍ରୋହକୁ ମନେ ପକାଇ ପୁନର୍ବାର ଇଂରେଜ ବିରୁଦ୍ଧରେ ଗଣବିଦ୍ରୋହ ଆରମ୍ଭ କରିଥିଲେ।

ଦୁର୍ଭିକ୍ଷର ପ୍ରାକୃତିକ କାରଣ ଥିଲା ୧୮୬୫ ମସିହାରେ ଦେଖାଦେଇଥିବା ମରୁଡି। କିନ୍ତୁ ଇଂରେଜ ସରକାରଙ୍କର ଘୋର ଅବହେଳା, ଜମିଦାରମାନଙ୍କର ସ୍ୱାର୍ଥପରତା ଏବଂ ମହାଜନମାନଙ୍କର ଅତିଶୟ ଲୋଭ ଫଳରେ ୧୮୬୬ ମସିହାର ଦୁର୍ଭିକ୍ଷ ଗୁରୁତର ଉଦ୍‌ବେଗଜନକ ପରିସ୍ଥିତିରେ ପହଞ୍ଚିଥିଲା। ସମଗ୍ର ଓଡ଼ିଶାର ଜନସଂଖ୍ୟାର ଏକ ଚତୁର୍ଥାଂଶ ଅର୍ଥାତ୍ ଦଶଲକ୍ଷରୁ ଅଧିକ ଲୋକ ମୃତ୍ୟୁବରଣ କରିଥିଲେ। ବିଶେଷ କରି ପୁରୀ ଜିଲ୍ଲାର ଚିଲିକାକୂଳବର୍ତ୍ତୀ ଅଞ୍ଚଳରେ ମୃତ୍ୟୁସଂଖ୍ୟା ସବୁଠାରୁ ଅଧିକ ଥିଲା। ଏହି ଜିଲ୍ଲାର ଅବସ୍ଥା ଖୁବ୍‌ଶୀଘ୍ର ଏତେ ଖରାପ ହୋଇଯାଇଥିଲା ଯେ ୧ଟଙ୍କାକୁ ମାତ୍ର ୯ସେର ଚାଉଳ ମିଳୁଥିଲା। ଦୋକାନବଜାର ସବୁ ବନ୍ଦ ହୋଇଯାଇଥିଲା। ଯେହେତୁ ଲୋକଙ୍କର ଅତ୍ୟାବଶ୍ୟକ ଜିନିଷ କିଣିବାର କ୍ଷମତା ନଥିଲା। ଏହି ଅର୍ଥନୈତିକ ଦୁର୍ଦ୍ଦଶା ଖୋର୍ଦ୍ଧା ସହ ବହୁ ଅଞ୍ଚଳକୁ ବ୍ୟାପିଯାଇଥିଲା। ଏହିସବୁ ଅଞ୍ଚଳ ଯଥା ବାଣପୁର, ପାରିକୁଦ, ଚବିଶକୁଦ, ରାହାଙ୍ଗ, ମାଲୁଦ, ବଜ୍ରକୋଟ, ବଳଭଦ୍ରପୁର, ମାଣିକପାଟଣା, ସିରାଇ, ଅସ୍ତରଙ୍ଗ, ମରିଚପୁର, ଗୋଳବାଇ ଏବଂ ଶାତପଡାର ଦୁଃଖଦାୟକ ଛବି ବର୍ଣ୍ଣନା କରିଥିଲେ ତତ୍କାଳୀନ ପୋଲିସ୍ ସୁପରିଟେଣ୍ଡେଣ୍ଟ। ଆକ୍ଷରିକ ଅର୍ଥରେ ପୁରୀ ଜିଲ୍ଲାର ପ୍ରତ୍ୟେକ ଅଞ୍ଚଳରେ ଅନାହାରର କରୁଣ ଦୃଶ୍ୟ ଦୃଷ୍ଟିଗୋଚର ହୋଇଥିଲା। ତତ୍‌ସହିତ ପ୍ରଚଳିତ ଅର୍ଥନୈତିକ ଦୁର୍ଦ୍ଦଶା ଯୋଗୁଁ ସମଗ୍ର ଅଞ୍ଚଳରେ ଅପରାଧ ବହୁ ମାତ୍ରାରେ ବଢି ଚାଲିଲା। ଲୋକଙ୍କର ଅବସ୍ଥା ଚରମସୀମାରେ ପହଞ୍ଚିଥିଲା। ସ୍ଥାନୀୟ ଅଫିସର ଏତାଦୃଶ ଅବସ୍ଥାକୁ ମୁକାବିଲା କରିପାରିନଥିଲେ। ଆୟତାଧୀନ କରିବା ବହୁତ କଷ୍ଟକର ବ୍ୟାପାର ଥିଲା। ସର୍ବସାଧାରଣ ଜନତା ବିପଦ ଆତଙ୍କ ଅନୁଭବ କରୁଥିଲେ। ଖାଦ୍ୟ ଅନ୍ୱେଷଣରେ ହଜାର ହଜାର ଲୋକ ଲୁଟ୍‌ତରାଜ ଆରମ୍ଭ କରିଦେଇଥିଲେ। ୧୮୬୬ ମସିହା ଜୁନ୍‌ମାସ ବେଳକୁ ଓଡ଼ିଶା ଚରମ ଦୁଃସହ ଦୁର୍ଭାଗ୍ୟ ଓ ଦାରିଦ୍ର୍ୟରେ ବୁଡି ରହିଥିଲା। ଏହି ଅଭୁତପୂର୍ବ ଦୁର୍ଭିକ୍ଷ ସମୟରେ ଖୋର୍ଦ୍ଧାରେ ଗଣବିକ୍ଷୋଭ ଦେଖାଦେଇଥିଲା। ଖୋରଧାର ପାଇକମାନେ ବିଶେଷ ଭାବେ ଉତ୍ପୀଡିତ ହୋଇଥିଲେ। କ୍ଷୁଧାରେ ହଜାର ହଜାର ପାଇକ ନରକଙ୍କାଳ ହୋଇଯାଇଥିଲେ। ଧୈର୍ଯ୍ୟହରା ହୋଇ ଶେଷରେ ସେମାନେ ୧୮୬୬ ମସିହା ମଇ ମାସ ୧୯ତାରିଖରେ ଆଇନଶୃଙ୍ଖଳା ନିଜ ହାତକୁ ନେଇଥିଲେ। ପ୍ରାୟ ଏକଶହ ପାଇକ ସିକୋର ଦଳବେହେରା ତଥା ସରବରାକାରଙ୍କ ପୁତ୍ର ନାରାୟଣ ହରିଚନ୍ଦନଙ୍କ ନେତୃତ୍ୱରେ ନନ୍ଦପୁର ଗ୍ରାମ ଆକ୍ରମଣ କରି ବିଦ୍ରୋହ ଆରମ୍ଭ କରିଥିଲେ। ଯେଉଁ ଲୋକମାନେ ଖାଦ୍ୟଶସ୍ୟ ଓ ଅନ୍ୟାନ୍ୟ ଜିନିଷ ମହଜୁଦ କରି ରଖୁଥିଲେ ସେହିମାନେ ବିଦ୍ରୋହୀଙ୍କର ଶିକାର ହେଉଥିଲେ। ପାଇକବିଦ୍ରୋହୀମାନଙ୍କ ସହିତ

ଯୋଗ ଦେଇଥିଲେ ଗାଁର ମୁଖିଆ, ସରବରାକାର, ଦଳାଇ ଏବଂ ଦଳବେହେରା । ପଶ୍ଚିମ ଦିଗରେ ଖୋର୍ଦ୍ଧା ମୁଖ୍ୟ ରାସ୍ତା ଠାରୁ ଆରମ୍ଭ କରି ପୂର୍ବଦିଗରେ ଦୟାନଦୀ ପର୍ଯ୍ୟନ୍ତ, ଦକ୍ଷିଣରେ ଚିଲିକା ହ୍ରଦ ଠାରୁ ଉତ୍ତରରେ ପିପିଲି ଅବସ୍ଥିତ ଅଞ୍ଚଳ ବିଦ୍ରୋହ ଦ୍ୱାରା ବିଶେଷ ଭାବେ ପ୍ରଭାବିତ ହୋଇଥିଲା । ଏତଦ୍ ବ୍ୟତୀତ ପୁରୀ ନିକଟବର୍ତ୍ତୀ ଅଞ୍ଚଳ ଠାରୁ ଉତ୍ତରଦିଗରେ ଖୋର୍ଦ୍ଧା ରାସ୍ତା ପର୍ଯ୍ୟନ୍ତ ଅଞ୍ଚଳ ମଧ୍ୟ ବିଦ୍ରୋହୀଙ୍କ ଅକ୍ତିଆରରେ ଥିଲା । ବିଦ୍ରୋହ ଆରମ୍ଭର ଦୁଇସପ୍ତାହ ମଧ୍ୟରେ ଭୂଷଣ୍ଡପୁର, ଜଙ୍କିଆ, କଣାସ ଏବଂ ସିକୋ ବହୁ ମାତ୍ରାରେ କ୍ଷତିଗ୍ରସ୍ତ ହୋଇଥିଲା । ବିଦ୍ରୋହ ଭୟାବହତା ବ୍ୟାପିବା ଫଳରେ ବାଣପୁରର ଆଦିବାସୀ, ପାଇକ ଓ ପାଣ ଆଦି ପ୍ରଭାବିତ ହୋଇ ଯୋଗଦାନ କରିଥିଲେ । ବିଦ୍ରୋହ ପ୍ରାରମ୍ଭରୁ ପୁରୀର ମାଜିଷ୍ଟ୍ରେଟ୍ ଜି.ଏନ୍. ବାର୍ଲୋ ଏହାକୁ ଗୁରୁତ୍ୱ ଦେଇନଥିଲେ । ସେ କହିଥିଲେ ଯେ ଏହି ବିକ୍ଷୋଭ ସମ୍ପୂର୍ଣ୍ଣ ରୂପେ ଆକସ୍ମିକ ଏବଂ ଏହା ପଛରେ କୌଣସି ରାଜନୈତିକ ଉଦ୍ଦେଶ୍ୟ ନାହିଁ । ଇଂରେଜ ସରକାର ଏହାକୁ ଦୁର୍ଭିକ୍ଷ ସମୟରେ 'ବ୍ରେଡ୍ ରାଇଟ୍ସ' ବୋଲି ଆଖ୍ୟା ଦେଇଥିଲେ । କିନ୍ତୁ ଯେତେବେଳେ ବିଦ୍ରୋହର ସ୍ୱଭାବ ଓ ପ୍ରଭାବ ଭୀଷଣ ଆକାର ଧାରଣ କରିଥିଲା ସେମାନେ ସ୍ୱୀକାର କରିଥିଲେ ଯେ ଖୋରଧାରେ ଆତଙ୍କରାଜର ବିପଦ ସୃଷ୍ଟି ହୋଇଛି ଏହା ଉଦ୍‌ବେଗଜନକ ପରିସ୍ଥିତି ମଧ୍ୟ ଆଣି ଦେଇଛି । ବିଦ୍ରୋହର ଭୟାବହତା ଦୃଷ୍ଟିରୁ ଏହାକୁ ଦମନ କରିବା ପାଇଁ ଇଂରେଜ ସରକାର ତୁରନ୍ତ ପଦକ୍ଷେପ ନେଲେ । ଅସଂଗଠିତ ପୋଲିସ ଫାଣ୍ଡିଗୁଡ଼ିକୁ ସଜାଡ଼ିଲେ, ଅନ୍ୟ ଜାଗାରୁ ପୋଲିସ୍ ଫୋର୍ସ ମଗାଇ ସର୍ବମୋଟ ୫୫୨ ବିଦ୍ରୋହୀଙ୍କୁ ବନ୍ଦୀ କଲେ । ବିଦ୍ରୋହୀ ବନ୍ଦୀମାନଙ୍କର ପ୍ରଥମେ ଖୋରଧା ଠାରେ ବିଚାର କରାଗଲା । ଦୋଷୀମାନଙ୍କୁ ପରେ କଟକ ଜେଲ୍‌ଖାନା ପଠାଇ ଦିଆଗଲା । ତଥାପି କଣାସ, ଜଙ୍କିଆ ଓ ସିକୋରେ ବିକ୍ଷୋଭ ଲାଗି ରହିଥିଲା । ଏହିସବୁ ଅଞ୍ଚଳରେ ଲୋକଙ୍କ ମନୋଭାବକୁ ବଦଳାଇବା ପାଇଁ ଇଂରେଜ ସରକାର ୧୮୧୭ ମସିହାର ବିଦ୍ରୋହ ଠାରୁ ୩୦ବର୍ଷ ପର୍ଯ୍ୟନ୍ତ ଖୋରଧା ଅଧିକାରୀଙ୍କ ସଂସ୍ପର୍ଷରେ ଆସିଥିବା ଜଣେ ଅଭିଜ୍ଞ ପୋଲିସ୍ ଅଫିସରଙ୍କୁ ନିଯୁକ୍ତ କଲେ । ଫଳତଃ ୧୮୬୬ ଅଗଷ୍ଟମାସ ବେଳକୁ ବିଦ୍ରୋହ କ୍ରମଶଃ ଥମି ଯାଇଥିଲା । କେତେକ ବିଦ୍ରୋହୀ ନେତା ପଡୋଶୀ ଗଡଜାତ ରାଜ୍ୟକୁ ପଳାୟନ କରିଥିଲେ । ଏହି ବିଦ୍ରୋହର ମୁଖ୍ୟ ନାୟକ ନାରାୟଣ ହରିଚନ୍ଦନ ମଧ୍ୟ ଖସି ପଳାଇ ନୟାଗଡରେ ଅବସ୍ଥାନ କରିଥିଲେ । ଇଂରେଜ ସରକାର ତାଙ୍କୁ ଧରିବା ପାଇଁ ସବୁପ୍ରକାର ଉପାୟ ଅବଲମ୍ବନ କରିଥିଲେ । କିନ୍ତୁ ଖୋର୍ଦ୍ଧାର ମୁଖିଆ ସରଦାରମାନେ ଇଂରେଜଙ୍କୁ କୌଣସି ପ୍ରକାର ସାହାଯ୍ୟ କରିନଥିଲେ । କାରଣ ପାଇକ ଓ ସେହି ଶ୍ରେଣୀର ଗୋଟିଏ ସ୍ୱତନ୍ତ୍ରତା ଅଛି । ସ୍ୱଭାବତଃ ସେମାନେ ସ୍ୱାଧୀନ ଚେତା, ସେମାନଙ୍କର ସାଂଗଠନିକ ବ୍ୟବସ୍ଥା ଅତି ଦୃଢ । ସେମାନଙ୍କର ଆର୍ଥିକ ଅବସ୍ଥା ସାଧାରଣତଃ ସ୍ୱଚ୍ଛଳ, ସେମାନଙ୍କର ସାମାଜିକ ଅବସ୍ଥା ରାଜପୁତ ସାମାଜିକ ଜୀବନ, ସଂସ୍କୃତି ଓ ସଂସ୍କାର ଠାରୁ କିଛି କମ୍ ନୁହେଁ । ଅବଶେଷରେ ଇଂରେଜ ସରକାର ସେମାନଙ୍କର ଏଜେଣ୍ଟଙ୍କ ଦ୍ୱାରା ନାରାୟଣ ହରିଚନ୍ଦନଙ୍କୁ ପଡୋଶୀ ଗଡଜାତ ରାଜ୍ୟରୁ ବନ୍ଦୀ କରିଥଲେ । ଏଥିସହିତ ଦୀର୍ଘଦିନର ବିକ୍ଷୋଭ ଓ ବିଦ୍ରୋହର ଅବସାନ ଘଟିଥିଲା ।

ଇଂରେଜଙ୍କ ବିରୋଧରେ ଗଣବିକ୍ଷୋଭ ଦବି ଯାଇଥିଲେ ସୁଦ୍ଧା ପାଇକମାନଙ୍କର ସେମାନଙ୍କ ପ୍ରତି ମନୋଭାବ ବଦଳିନଥିଲା । ତେଣୁ ସରକାର ଚିନ୍ତା କଲେ ଯେ ଖୋର୍ଦ୍ଧାର ପ୍ରାୟ ୧୦ହଜାର ପାଇକମାନଙ୍କୁ କିପରି ଦୀର୍ଘସ୍ଥାୟୀ ସୂତ୍ରରେ ଆୟତ କରିବାକୁ ହେବ । ତତ୍କାଳୀନ ଖୋର୍ଦ୍ଧାର ପୋଲିସ୍ ଅଫିସର, ଲେସି ପ୍ରସ୍ତାବ ଦେଲେ ଯେ ପାଇକମାନଙ୍କ ଜାଗିର ଜମି ଉପରେ ନିୟମିତ ତଥା ସ୍ଥାୟୀ ଭାବେ ପୋଲିସ୍ କର ବସାଇବ ଏବଂ ସେମାନଙ୍କୁ ଚୌକିଦାର ଭାବେ ଖଟାଇବ । କିନ୍ତୁ ଏହା ଆପତ୍ତିଜନକ ବ୍ୟବସ୍ଥା ଥିଲା । ଅନ୍ୟପକ୍ଷରେ ଖୋରଧାର ସରକାରୀ ମାଜିଷ୍ଟ୍ରେଟ୍ ବାର୍ଟନ୍ ପ୍ରସ୍ତାବ ରଖିଲେ ଯେ ସମୁଦାୟ ପାଇକମାନଙ୍କ ମଧ୍ୟରୁ କେତେକଙ୍କୁ ବାଛି ସେମାନଙ୍କୁ ଉଚ୍ଚତର ପଦବୀରେ ନିଯୁକ୍ତି ଦେବା । ଫଳରେ ଗୋଟିଏ ଉଚ୍ଚଶ୍ରେଣୀର ସୁସଂଗଠିତ ତଥା ଶୃଙ୍ଖଳିତ ଗୋଷ୍ଠୀ ତିଆରି ହୋଇପାରିବ । କିନ୍ତୁ ଏହି ପ୍ରସ୍ତାବ ଦ୍ୱାରା ପାଇକଶ୍ରେଣୀରେ ବିଭାଜନ, ବିଶୃଙ୍ଖଳା, ବିଦ୍ୱେଷ ସୃଷ୍ଟି ହେବାର

ସମ୍ଭାବନା ଥଲା। ଅନ୍ୟପକ୍ଷରେ ବାର୍ଟନ୍ ପାଇକମାନଙ୍କ ପ୍ରତି ଦମନ ନୀତି ଅବଲମ୍ବନ କରିବା ପାଇଁ ସୁପାରିଶ କରିଥିଲେ। କିନ୍ତୁ ଉପରୋକ୍ତ ପ୍ରସ୍ତାବଗୁଡିକୁ ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ୍ ପ୍ରତ୍ୟାଖ୍ୟାନ କରିଦେଇଥିଲେ। କେବଳ ଦୁର୍ଭିକ୍ଷର ପ୍ରଭାବ ସମ୍ପୂର୍ଣ୍ଣ ରୂପେ ଲୋପ ପାଇବା ପର୍ଯ୍ୟନ୍ତ ଖୋରଧାର ପୋଲିସ୍ ବାହିନୀ ସଶକ୍ତ ଓ ଅଧିକ କ୍ରୀୟାଶୀଳ କରିବାକୁ ସେ ଅନୁମୋଦନ କରିଥିଲେ। ଏହାଦ୍ୱାରା ଖୋର୍ଦ୍ଧା ପାଇକମାନଙ୍କର ଭାଗ୍ୟ ପରିବର୍ତ୍ତନ ହୋଇନଥିଲା। କାଳକ୍ରମେ ସରକାରଙ୍କ ପରିବର୍ତ୍ତିତ ନୀତି ଓ ବ୍ୟବସ୍ଥା ଦ୍ୱାରା ସେମାନେ ଧ୍ୱଂସମୁହାଁ ହୋଇଥିଲେ। ପାଇକଶ୍ରେଣୀର ଶକ୍ତି ପ୍ରାୟ ନିଶ୍ଚିହ୍ନ ହେବାକୁ ବସିଲା। ଅଧିକନ୍ତୁ ସରକାରଙ୍କ ନୂତନ କୃଷି ଓ ବାଣିଜ୍ୟ ନୀତି ଏବଂ ଜମିଜମା ବନ୍ଦୋବସ୍ତ ଫଳରେ ସମଗ୍ର ପାଇକ ପରିବାର ଓ ପାଇକସମାଜ ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥିଲା।



# A Tribute to an Eminent Historian Prasanna Kumar Mishra

**Kailash Chandra Dash**

## 1

I know Dr Prasanna Kumar Mishra .former research associate and reader in History of the Department of History in Utkal University from my post graduate career as a student of History in Utkala University Bhubaneswar from 1975 to 1978 and thereafter a researcher and lecturer of History for about three decades and more. I used to meet him frequently for interacting on historical researches and rare archival documents of Odisha State Archives Bhubaneswar. He was a mine of information on the documents of Odisha State Archives and his boundless enthusiasm for exploring the history of modem Princely States of Odisha is unique. Prasanna Mishra was at first a research scholar in the Department of History in Utkal University and he undertook researches on the feudatory states of Odisha in the colonial phase under the scholarly supervision of a very honest and impartial historian Professor Kishori Mohan Patra whose dissertation entitled Odisha under the East India Company is a lasting contribution to the study of Colonial Odisha. He became a research assistant when I was a student of Utkal University and then also Dr. Mishra was teaching Odisha history under the Mughals and the Marathas. The Department of History of Utkal University Bhubaneswar was his centre of activities as a potential researcher and teacher for more than three decades. He retired as a Reader in History in 2003. Prasanna Mishra spent many hours in the library room of the Odisha State Archives pondering over the past of Odisha through the documents of the Board of Revenue Sections.He had thorough knowledge of the rare files on the colonial administration in Odisha and meticulously read them and'utilised for his researches. His death in 2022 is a great loss to the world of scholars and researchers of Odisha and abroad. This brief focus on him is a tribute on my behalf for his potential research on Odisha History and Culture.

## 2

Prasanna Mishra was confined to the documentary study of colonial Odisha. Mainly the resistance movement in the Princely States of Odisha. In his articles and books one can discover his boundless interest in documenting several new aspects of the revolt in the Princely States of Odisha in the 19th century A.D. During his days as a research scholar in the Department of History of the Utkal University

Bhubaneswar he had shown his scholarly merit by publishing articles on the new aspects of the anti-feudal movements in the Princely States of Odisha in Bharati, a very famous journal published by Utkal University. His articles in Bharati from 1970 to 1973 on Kondh Rising under Chakra Bisoi, 1854-56, Mayurbhanj-Bamanghati Dispute, 1821-1832 and 1832-1837, Nayagarh Rebellion, 1849-1851 and British Relation with the Tributary MahalAngul constitute significant documentary analysis. He presented new files in his research papers in Bharati. In the 1970s he had three significant papers first "Freedom Struggle in Odisha" in Sidelights of the History and Culture of Orissa edited by Professor M.N.Das in 1977, second "Career and achievement of a British Servant in Orissa" and third "NaankaFituri(Paik Rising of 1866" in Orissa Review of 1979. These papers show his extra-ordinary interest in exploring new information on the little known aspects of the study of the Princely States of Odisha. He had numerous papers published in the 1980s and 1990s in the Proceedings of Indian Historical Records Commission, Proceedings of Indian History Congress and Proceedings of Odisha History Congress which add to our knowledge on the history of colonial Odisha.

In 1983 his doctoral dissertation was published in the form of a book entitled Political Unrest in Orissa in the 19thCentury(Anti-British, Anti-Feudal and Agrarian Risings) by PunthiPustak Kolkata as Number 14 of Orissan Studies Project. This book provides a comprehensive picture of the political development of Odisha in the 19th century. It brought to light the story of the People's Movement right from the beginning of the British conquest of Odisha in 1803 till the end of the century. It covers different risings from the Khurda Rising of 1817 to the Ranapur Rising of 1894 with considerable emphasis of their anti-feudal and anti-colonial character agrarian grievances have been highlighted to understand the basis problems affecting the lives of many a people not only in the coastal tract, but also in the hilly and inaccessible regions of Odisha. The work is also a systematic account of continuous struggle that occurred in the hilly tracts of Odisha in which the tribal communities such as the Kandhas, Savaras, Gonds, Binhals, Bhuyans, Juangs and Kols were actively involved Original works and manuscript records belonging to the period have been carefully consulted to construct the thesis. Thus Prasanna Mishra left a lasting contribution to the Odishan studies by this well-documented thesis. The book was appreciated with enthusiasm by the students and scholars of the modern Indian history as well as by the general reading public.

In the 1980s and 1990s his scholarship began to grow with more studies on modern Odisha. His research articles were published in Odisha Review and Utkal Historical Research Journal during this phase which added to our documents on colonial and modern Odisha. In Odisha Review his research papers include "Prajameli in the Ex-Feudatory State of Nayagarh 1893-1894", (1979), "Anti-Feudal Agitation in the Ex-Feudatory State of Daspalla 1874-1894", (1981), "Tribals and Freedom Struggle in Orissa", (1981),

"Homage to BuxiJagabandhu"(l983), "Barunei Hills and the Kingdom of Khurda"(1989), "Annual Indent of Woollen Clothes for the use of Rath at Puri from 1820 to 1828(1997), "Social Movements in Orissa during the Gandhian Era"(1997), "Gandhiji'sHarijan Tour in Angul"(1997) and "BuxiJagabandhuVidyadhar:An Epoch making Hero of the Khurda Rising of 1817"(1999). His interesting article entitled "A.J.M. Mills and Cuttack" was incorporated in the famous volume Cuttack One Thousand years(Volume-I) published by Cuttack City Millenium Celebrations Committee in 1990. More potential researches were published by Dr Mishra in his Department Journal entitled Utkal Historical Research Journal which incorporated "Role of the Tribals in the Freedom Struggle in Orissa", 1990, Socio-Economic Changes in Tribal Life A Brief Historical Study", 1991," A Brief Account of the People's Movement in the Princely States of Orissa during the British Rule", 1992, "some Aspects of Maritime Acivities and Boat Building in 19th Century Orissa", 1993, "Role of Gandas in the Gandhian Movement in Orissa, An Episode of 1925-27", 1994, "Prospects of Cotton Trade in British Orissa, 1803-1857, 1995, "BuxiJagabandhuVidyadhar, Post-Surrender life and the Jamindary of Rorung, 1825-1886", 1996, "The Merger of the Princely States of Orissa", 1998 and "Role of the Congress in the District of Koraput in Orissa, 1938- 39", 1998. He had also brilliant research papers in the volumes published by Odisha State Archives, Bhubaneswar which include "Tribal Uprising in Orissa, A Precursor to the National Liberation Movement", 1991 (Our Documentary Heritage), "The Port of Gopalpur during the second half of 19thCentury:Maritime Activities and Customs Establishments", 1996(Maritime Activities and Trade in Orissa), "Orissan Culture in the Eyes of the Britishers:People and Society", 1997(Our Documentary Heritage), "Tribals Participation in the Freedom Struggle in Orissa", 1997(Reflections on the National Movements in Orissa), "Development of Education among the Tribals of Orissa_A Brief Historical Studies", 1997(Our Documentary Heritage), "Netajee INA and the Oriyas", 1997(An Approach to Some Aspects of Subhas Chandra Bose) and "Reflections of the Indian Freedom Movement in the Princely States of Orissa, 1921-1931", 1998(Towards Merger). In all these research articles by Professor Mishra there is an appreciation of the new views and documents lying here and there. His articles were also published in the Orissa Historical Research Journal, Proceedings of Odisha History Congress and Journal of Orissan History and in many other Odia magazines and newspapers.

He had also two more books having new aspects on the Paiks of Odisha and the Kujang under the British. "The last Days of the Oriya Militia" of Dr Prasanna Mishra is a documentary account on the formation, composition, working and dissolution of the landed Militia Class(the Paiks) during the early years of the British rule in Odisha.So far my knowledge goes such a study was a novel one in Odishan historiography. There are accounts on the military activities in Odisha in different phases by some Odia historians; but this work is singularly important for a comprehensive study on the Paiks of Odisha. The author on the basis of huge archival documents has been considerably successful in the interesting study on the Paik Company

which was carved in December 1822.The men of the Paik Company were effectively trained and disciplined under the command of the European officers.The Orissa Paik Company undertook heavy and strenuous journey during their life span.But there services could not be popular. In March 1859 the Orissa Paik Company was dismantled.The author offered a fascinating narrative of the working of this Company from 1822 to 1859. He had consulted records like that of the Board of Revenue and those of the Districts of Odisha in the Odisha State Archives He had collected his sources from different proceedings, selections and journals.From the point of view of an Account it is analytical. This work is very necessary for the comprehensive study of the military class in India.A kingdom for Sale(Kujang under British Rule:1803-1875) published by S.S. Printers, Bhubaneswar in 1998 was another-significant landmark of Prasanna Mishra. This book on Kujang unfolded the traumatic days of the Kujang Raj family. During the phase of British conquest and consolidation of authority Kujang like Khurda came to great focus and became a centre of unrest. The author in this book had taken considerable care in providing a connected and fascinating account of Kujang Raj family from the phase of British conquest till 1875. His narrative providing the political and diplomatic scene in this region of Odisha was based on many archival documents. They were mainly collected from Odisha State Archives Bhubaneswar. The author's credit was in documenting many rare sources hitherto unnoticed by the historians. In UtkalSahityaBipinBihariSen had presented an account of Kujang in the beginning phase of the 20th century. In course of time historians like H.K.Mahatab, B.C.Ray, P.Mukherji and S.C.De had discussed the problems of Kujang in their works, but Prasanna Mishra's Account was singularly important for his enquiryinto the problems of Kujang Raj family. Kujang once a rich and powerful kingdom was sold in auction like a commodity for Rs. 5 lakhs only to Maharaja of Burdhwan in 1868. In doing this the British authorities justified this action stating that the Magistrate of Cuttack had already recommended since October 1813 to the Government of Bengal for sale or attachment of Kujang.The author's attempts in reconstructing the history of Kujang in this light is really an important addition to our knowledge. Another interesting aspect of the book is Kujang-Pandua conflict. Pandua consisting of 94 villages was originally a part of Kujang. But during this phase of British rule it was farmed to many particularly Harchand Roy and Dwarakanath Tagore. From 1822 Pandua became the Zamindary of Thakur family. Dr Mishra's analysis of this part is based on reliable documents. Pandua's link with the Thakur family is an interesting aspect of the study of Odisha's cultural history because Rabindranath Thakur's love and admiration for Odisha was due to this contact. While going through this work one will meet a temptuous phase in the history of Kujang. It was relating to the succession to the guddi by the brothers of BirabhandraSendh. The author had discussed this problem in some details. The report of Harcourt in 1805 was considerably taken into account. The British authorities were aware of the alliance between ChandradhvajaSendh who had usurped the throne of Kujang , the Raja of Kanika and the Raja of Khurda and therefore the Company men thought it right to tackle this problem. A solution of this problem

would help them in submitting a plan for the suppression of piracy and plunder which prevailed under the Maratha Government along the sea-coast in this part. The author had considered this problem as very important and had presented it on the basis of evidence till the accession of MadhusudanSendh on the guddi in place of his younger brother Chandradhvaja. The author's account thus covers a phase which is significant. The author was successful in presenting the diplomacy of the Company Raj in Kujang on the basis of many important archival documents and in particularly focusing the stages of the sale of the kingdom. This added to our knowledge on Odisha History.

In conclusion I may add that Dr Prasanna Kumar Mishra spent about 50 years of his life to the exploration of Modem Odisha History and Culture. Starting his career as a Research assistant and then a Reader in the Department of History in Utkal University Bhubaneswar he was busy in the study of many rare documents preserved in Odisha State Archives Bhubaneswar and contributed immensely to the study of Odisha during the colonial and nationalist phase. His study on Khurda movement is a landmark and itis successfully used by the scholars of Odisha and abroad even in this post-modern phase.

**Selected Bibliography of Dr. Prasanna Kumar Mishra**


1. *Political Unrest in Orissa in the 19th Century, Anti-British, Anti-Feudal and Agrarian Risings,* 1983, Orissan Studies Project-14, PunthiPustak, Kolkata.
2. *Last Days of Oriya Militia(Orissa Paik Company:1818 to 1859),* 1996, S.S. Printers and the Author(Publisher), Bhubaneswar.
3. *A Kingdom for Sale(Kujang under British Rule: 1803-1875),* 1998, S.S. Printers and Publishers, Bhubaneswar.
4. Kondh Rising under Chakra Bisoyee(1854-1856),*Bharati,* Utkal University, Bhubaneswar, Vol-4, 1970, p.41-54.
5. Mayurbhanj-BamanghatiDispute(1821-1832), *Bharati,* Vol-5, December 1971, p.53-61.
6. Mayurbhanj-BamanghatiDispute(1832-1837),*Bharati,* Vol-6, 1972, p.45-58
7. NayagarhRebeilion(1849-1851), *Bharati,* Vol-6, July 1972, p.87-94.
8. British Relation with the Tributary Mahal, *Hngul, Bharati,* Vol-7, 1973.
9. Freedom Struggle in Orissa, in *Sidelights on History and Culture of Orissa,* ed. M.N.Das, 1977, Vidyapuri, Cuttack.
10. Career and Achievement of a British Sen/ant in Orissa, *Orissa Review,* Vol- - -36, 2/3, 1979, p.21-22.
11. NaankaFituri(Paik Rising of 1866), *Orissa Review,* 2(1979), p.38-40.
12. Role of the Tribals in the Freedom Struggle in Orissa, *Utkal Historical Research Journal(Hereafter UHRJ),* Vol-1, 1990, p.52-63.
13. Socio-Economic Changes in Tribal Life-A Brief Historical Study, *UHRJ,* Vol-2, 1991, p.91-100.
14. A Brief Account of the People's Movement in the Princely States of Orissa during the British *Rule,UHRJ,* Vol-3, 1992, p.113-120.
15. Soma Aspects of Maritime Activities and Boat Building in 19th Century Orissa, *UHRJ,* Vol-4, 1993, p. 133-150.
16. Role of Gandas in the Gandhian Movement in Orissa(An Episode of 1925- 1927), *UHRJ,* 1994, Vol-5.

17. Prospects of Cotton Trade in British Orissa(1803-1857), *UHRJ,* Vol-6, 1995, p.83-90.
18. BuxiJagabandhuVidyadhar, Post-Surrender life and the Zamindary of Rorung, 1825-1886, *UHRJ,* Vol-7, 1996, p.58-64.
19. The Merger of the Princely States of Orissa, *UHRJ,* Vol-10, 1998, p.39-60.
20. Role of the Congress in the District of Koraput in Orissa, 1938-1939, *UHRJ,* Vol-11, 1998, p.73-95.
21. Tribal Resistance Movement in Orissa 1821-1942, in *People's Movement in Orissa during the Colonial Era,* ed. A.C.Pradhan and A.K.Patnaik, 1994, p.157-167
22. Pra]ameli in the Ex-Feudatory State of Nayagarh(1893-94), *Orissa Review,* February, 1979, p.17-22.
23. Anti-Feudal Agitation in the Ex-Feudatory State of Daspalla(1874- 1894),Orissa *Review,* May, 1981, p.19-21.
24. Tribals and Freedom Struggle in Orissa, *Orissa Review,* August, 1981, p.39-
25. Homage to Buxijagabandhu, *Orissa Review,* January, 1983, p.29-30.
26. Barunei Hills and the Kingdom of Khurda, *Orissa Review,* April, 1989.
27. Annual Indent of Woollen Clothes for the use of the Rath at Puri 1820-1828, *Orissa Review,* July, 1997, p.56-57.
28. Social Movements in Orissa during the Gandhian Era, *Orissa Review,* August, 1997, p.34-36.
29. Gandhiji'sHarijan Tour in Angul from 6th May, 1934, *Orissa Review,* October, 1997, p.3-4.
30. BuxiJagabandhuVidyadhar:An Epoch making Heroof the Khurda Raj family of 1817, *Orissa Review,* Jnaaury 1999, p.31-35.
31. A.J.M. Mills and Cuttack, *Cuttack One Thousand Years,* Vol-1, 1990, Cuttack City Millenium Celebrations Committee.
32. Tribal Uprising in Orissa A Precursor to the national Liberation Movement, *Our Documentary Heritage,* Vol-2, 1991, Odisha State Archives.
33. The Port of Gopalpur during the second half of 19thcentury:Maritime Activities and Sea-Customs Establishments, *Maritime Activities and Trade in Orissa,* Odisha State Archives, 1996.
34. 0rissan Culture in the Eyes of the Britishers:People and Society, *Our Documentary Heritage,* Odisha State Archives, Vol-5, 1997.
35. Netajee INA and the Oriyas, in *An Approach to Some Aspects of Subhas Chandra Bose,* Odisha State Archives, 1997,
36. Tribals Participation in the Freedom Struggle in Orissa, *Reflections in the National Movement in Orissa,* Odisha State Archives, 1997.
37. Development of Education among the Tribals of Orissa; A Brief Historical Studies, *Our Documentary Heritage,* Odisha State Archives, Vol-3, 1997.
38. Reflections of the Indian Freedom Movement in the Princely States of Orissa 1921-1931, *Towards Merger,* Odisha State Archives, 1998.

**Former Reader in History, Government of Odisha Education Service, BJB Nagar, C-3/2, Bhubaneswar-14, Mo-9437621516.**



# ସ୍ମୃତିରେ ପ୍ରସନ୍ନ ବାବୁ

*ପ୍ରଫେସର - ଅଶୋକନାଥ ପରିଡ଼ା*

ପ୍ରସନ୍ନବାବୁଙ୍କ ସ୍ମୃତିଚାରଣ ଅବକାଶରେ କେତୋଟି କଥା ମନେପଡେ । ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଇତିହାସ ବିଭାଗର ଛାତ୍ର ଥିବା ସମୟରେ ମୁଁ ପ୍ରସନ୍ନବାବୁଙ୍କ ନାମ ଶୁଣିଥିଲି । ମାତ୍ର ତାଙ୍କୁ ଦେଖିବାର ସୁଯୋଗ ପାଇନଥିଲି । ୧୯୭୪ ମସିହାରେ ଇତିହାସ ବିଭାଗରେ ଅଧ୍ୟାପକ ଭାବରେ ଯୋଗଦେବା ପରେ ମୁଁ ତାଙ୍କ ସଂସ୍ପର୍ଶରେ ଆସିଲି ଏବଂ ତାଙ୍କୁ ଭଲ ଭାବେ ଜାଣିବାର ସୁଯୋଗ ପାଇଲି । ପ୍ରଥମେ ବିଭାଗର ଦ୍ୱିତୀୟ ମହଲାରେ ଥିବା ୧୧୬ନଂ କୋଠାରୀରେ ମୁଁ ପ୍ରସନ୍ନବାବୁ ଏବଂ ସ୍ୱର୍ଗତ ପ୍ରଫେସର ଅତୁଲ ଚନ୍ଦ୍ର ପ୍ରଧାନ ଏକତ୍ର ବସୁଥିଲୁ ।  ଉଭୟ ପ୍ରଫେସର ପ୍ରଧାନ  ଓ ପ୍ରସନ୍ନବାବୁ ସହପାଠୀ ଥିଲେ । ମୁଁ ସେମାନଙ୍କ ଠାରୁ ଦୁଇବର୍ଷ କନିଷ୍ଠ ଥିଲି । ଏକାଠି ବସିବାର ସୁଯୋଗରେ ପ୍ରସନ୍ନବାବୁଙ୍କ ସହିତ ମୋର ଘନିଷ୍ଠତା ବୃଦ୍ଧି ପାଇଲା । ପରବର୍ତ୍ତୀ ସମୟରେ ପ୍ରସନ୍ନବାବୁ ବିଭାଗର ପ୍ରଥମ ମହଲାରେ ଥିବା ଏକ କୋଠରୀରେ ବସିଲେ ଏବଂ  ମୁଁ ଠିକ୍ ତା'ର ପାଖ କୋଠରୀରେ ବସିଲି । ତେଣୁ ପରସ୍ପର ପ୍ରତି ଅତି ନିକଟତର ଥିଲୁ । ଅନେକ ସମୟରେ କୋଠରୀରୁ ବାହାରିଲେ ମୋର ପ୍ରସନ୍ନବାବୁଙ୍କ ସହିତ ଦେଖାହୁଏ । ଇତିହାସ ବିଭାଗରେ ପ୍ରସନ୍ନବାବୁ ପ୍ରଥମେ ଗବେଷଣା ସହାୟକ ପଦବୀରେ ଯୋଗ ଦେଇଥିଲେ । ବିଭାଗୀୟ ମୁଖ୍ୟଙ୍କ ତତ୍ତ୍ୱାବଧାନରେ ପରିଚାଳିତ ବିଭିନ୍ନ ଗବେଷଣା ପ୍ରକଳ୍ପକୁ ସେ ସହାୟତା କରୁଥିଲେ । ଏତଦ୍ ବ୍ୟତୀତ ତାଙ୍କର ନିଜସ୍ୱ ଗବେଷଣା ପ୍ରକଳ୍ପ ଥିଲା । ଇଂରେଜ ଶାସନକାଳୀନ ଓଡ଼ିଶା ଥିଲା ତାଙ୍କର ଗବେଷଣାକ୍ଷେତ୍ର । ସେଥିପାଇଁ ଓଡ଼ିଶା ଅଭିଲେଖାଗାରରେ ସେ ଅଧିକାଂଶ ସମୟ କଟାଉଥିଲେ । ଗବେଷଣା କ୍ଷେତ୍ରରେ ତାଙ୍କର ଯଥେଷ୍ଟ ପାରଦର୍ଶିତା ଥିଲା । ଯାହା ଅନ୍ୟ ଗବେଷକମାନଙ୍କ ପାଇଁ ଅନୁକରଣୀୟ । ଗବେଷଣା କରିବାକୁ ସେ ମୋତେ ଉତ୍ସାହିତ କରୁଥିଲେ । ଶୀଘ୍ର ସାରିଦିଅନ୍ତୁ, ନଚେତ୍ ପଛରେ ପଡିଯିବେ । ଏକଥା ଥରେ ସେ ମୋତେ କହିଥିଲେ । ସେତେବେଳେ ମୁଁ ଏହି କଥାକୁ ଗୁରୁତ୍ୱ ଦେଇନଥିଲି । କିନ୍ତୁ ପରବର୍ତ୍ତୀ ସମୟରେ ଏହାର ବାସ୍ତବତା ମୁଁ ଉପଲବ୍ଧି କରିଥିଲି । ଏକ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ଲେଖିବା ବିଷୟ ଚର୍ଚ୍ଚାରେ ଥିଲା । ପ୍ରସନ୍ନ ବାବୁ କହିବାର ଶୁଣିଛି, ଆମ ବିଭାଗ (ଇତିହାସ) ଲେଖିବା କଥା, ଇତିହାସ ବିଭାଗ ନ ଲେଖିଲେ ଲେଖିବ କିଏ ? ସେଥିପାଇଁ ସେ ଲେଖିବେ ବୋଲି ଇଚ୍ଛା ପ୍ରକାଶ କଲେ । ମାତ୍ର ତାଙ୍କର ଏହି ଇଚ୍ଛା ପୂରଣ ହୋଇପାରିଲା ନାହିଁ । ମୋର ଯାହା ମନେପଡେ ସେ ଏକ ସଂକ୍ଷିପ୍ତ ଇତିହାସ ଲେଖିଥିଲେ ଯାହାକି ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବ ଉପଲକ୍ଷେ ଏକ ଦୈନିକ ଓଡ଼ିଆ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । ପ୍ରସନ୍ନବାବୁ ନିଜ ଅଧ୍ୟବସାୟ ଯୋଗୁଁ ଗବେଷଣା ସହାୟକ ପଦରୁ ଅଧ୍ୟାପନା କ୍ଷେତ୍ରକୁ ଉତ୍ତୀର୍ଣ୍ଣ ହୋଇଥିଲେ । ଅଧ୍ୟାପନାକୁ ସେ ଅତି ନିଷ୍ଠାର ସହିତ ଗ୍ରହଣ କରିଥିଲେ । ଅଳ୍ପଦିନ ମଧ୍ୟରେ ସେ ଛାତ୍ରଛାତ୍ରୀମାନଙ୍କର ପ୍ରିୟଭାଜନ ହୋଇପାରିଥିଲେ । ମୁଁ ଏବଂ ପ୍ରସନ୍ନବାବୁ ଉଭୟ ଓଡ଼ିଶା ଇତିହାସ ପଢାଉଥିଲୁ । ଓଡ଼ିଶା ଇତିହାସର ଗୋଟିଏ ଭାଗ ମୁଁ ପଢାଉଥିଲି ଅନ୍ୟ ଭାଗଟି ସେ ପଢାଉଥିଲେ । ସେଥିପାଇଁ ବିଭିନ୍ନ ବିଷୟ ଉପରେ ପରସ୍ପର ମଧ୍ୟରେ ଆଲୋଚନା ହୁଏ । ବିଶେଷ କରି ଓଡ଼ିଶାର କଳାସ୍ଥାପତ୍ୟ ବିଷୟରେ ମୋ ଠାରୁ ପଚାରି ବୁଝନ୍ତି । ଓଡ଼ିଶାର କଳାସ୍ଥାପତ୍ୟ କ୍ଷେତ୍ରରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ ପାଇଁ ଓଡ଼ିଶା ଇତିହାସ ବିଷୟ ରଖିଥିବା ଛାତ୍ରଛାତ୍ରୀମାନେ ପ୍ରତିବର୍ଷ ଭୁବନେଶ୍ୱରରେ ଅବସ୍ଥିତ ବିଭିନ୍ନ ମନ୍ଦିର ଓ ଗୁମ୍ଫା ପରିଦର୍ଶନ କରିଥାନ୍ତି । ମୁଁ ସେମାନଙ୍କର ମାର୍ଗଦର୍ଶକ ହୋଇଥାଏ । କଳା ସ୍ଥାପତ୍ୟ କ୍ଷେତ୍ରରେ ପ୍ରସନ୍ନବାବୁଙ୍କ ଆଗ୍ରହ ଥିବାରୁ ଗୋଟିଏ ବର୍ଷ କ୍ଷେତ୍ର ଅଧ୍ୟାପନା ପାଇଁ ଛାତ୍ରଛାତ୍ରୀମାନଙ୍କ ସହିତ ଯୋଗ ଦେବା ପାଇଁ ମୁଁ ତାଙ୍କୁ ଅନୁରୋଧ କରିଥିଲି । ମୋର ଅନୁରୋଧ ରକ୍ଷା କରି କ୍ଷେତ୍ର ଅଧ୍ୟାପନାରେ

ଯୋଗ ଦେଲେ। ମନ୍ଦିର, ଗୁମ୍ଫା ପରିଦର୍ଶନ ଶେଷରେ ମୁଁ ତାଙ୍କୁ ପଚାରିଲି ଆପଣଙ୍କୁ କିପରି ଲାଗିଲା। ସେ ତତ୍‌କ୍ଷଣାତ୍ ଉତ୍ତର ଦେଲେ ମୁଁ ବହୁତ କଥା ଜାଣିଲି। ଆପଣ ପିଲାମାନଙ୍କୁ ଯାହା ବୁଝାଉଥିଲେ ମୁଁ ତାକୁ ଧ୍ୟାନ ସହକାରେ ଶୁଣୁଥିଲି। ଆସନ୍ତାବର୍ଷ ମୋତେ ସାମିଲ୍ କରିବେ। କୌଣସି କାରଣରୁ ପରବର୍ତ୍ତୀ ସମୟରେ ସେ ଯୋଗ ଦେଇପାରିଲେ ନାହିଁ। ପ୍ରସନ୍ନବାବୁଙ୍କ ସହିତ ମୋର କେବଳ ଯେ ସହକର୍ମୀ ହିସାବରେ ସମ୍ପର୍କ ଥିଲା ତାହା ନୁହେଁ, ବ୍ୟକ୍ତିଗତ ସମ୍ପର୍କ ମଧ୍ୟ ଥିଲା। ତାଙ୍କର ପତ୍ନୀ ଏବଂ ମୋର ପତ୍ନୀ ଶୈଳବାଳା ମହିଳା ବିଶ୍ୱବିଦ୍ୟାଳୟର ବି.ଏ ଶ୍ରେଣୀରେ ସହପାଠିନୀ ଥିଲେ। ସେହି ଦୃଷ୍ଟିରୁ ଆମର ସମ୍ପର୍କ କେବଳ ଇତିହାସ ବିଭାଗରେ ସୀମିତ ନ ରହି ପରିବାର ପର୍ଯ୍ୟନ୍ତ ପ୍ରସାରିତ ଥିଲା। ଏପରିକି ପ୍ରସନ୍ନବାବୁଙ୍କ ପତ୍ନୀ ସତ୍ୟଭାମା ଇତିହାସ ବିଭାଗରେ ମୋର ଛାତ୍ରୀ ଥିଲେ। ସେଥିପାଇଁ ପ୍ରସନ୍ନବାବୁଙ୍କ ସହ ମୋର ଏକ ଭିନ୍ନ ସମ୍ପର୍କ ଥିଲା। ଆଜି ତାଙ୍କର ସ୍ମୃତିଚାରଣ କଲାବେଳେ ଏହି କେତୋଟି କଥା ମନକୁ ଆସେ। ତାଙ୍କର ବିୟୋଗ ପୂର୍ବରୁ ତାଙ୍କ ସହିତ ଥରୁଟିଏ ଦେଖା ନହୋଇପାରିବାରୁ ମନରେ ଅବଶୋଷ ରହିଲା।





# Going Down the Memory Lane with Prasanna Sir – The Man I Adored and Respected

***Ashok Ku. Patnaik***
*Former Professor and Head of the*
*Dept. of History, Utkal University*
*Vani Vihar, Bhubaneswar*

I remembers my first meeting with Prasanna sir when I came from Balasore to take Admission in M.A. classes in 1974, perhaps in the month of August or September of the same year. The place was room number 56 (the Gallery of the Dept- where later I taught as a teacher) and he was there with our other teachers. At that time Professor Manmath Nath Das was the Head of the Dept. and most of the official works he vested on Prasanna Sir. Classes started before Puja vacation and I remained as a student there almost till the end of 1976 as our M.A. examination was too late. Prasanna Sir taught our friends who had opted for the History of Orissa while mine was Russion History. History of Orissa, especially the modern period was his domin and he was continuing his research under the supervision of Professor Kishori Mohan Patra on the topic of the Political Unrest in Princely states of Odisha in 18th and 19th centuries. Later I become an adhoc lecturer in P.N. college, Khordha from 1978 to 1988, during which time I came to my department on various occasions and interacted with Prasanna Sir on possible topics in modern history of Odisha in which I can do my research. I talked with Prof. Das about my desire to be his scholar and a tentative topic was fixed but it did not materialise as the number of scholars under his guidance did not leave any space for me. I went to Jawarharlal Nehru University for my M.Phil and Ph.D. in 1980 and returned back in 1985. By that time, Prasanna Sir was awarded Ph.D. in 1984 when was a Research Assistant in the dept Many of my teachers had not obtained the Ph.D. Degee by that time, That was a great achievement by Prasanna Sir, to become Dr. Prasnna Kumar Mishra. Later he published his thesis in the form of a book from Calcutta and it was based mostly on the Primary sources collected from Board of Reveune, Cuttack & Orissa state Archieves, Bhubaneswar with much pain and care and till now it is in much demand by scholars working on modern Odisha, especially on the princely states.

I came back to my department in February 1987 as a Reader and worked with Prasanna Sir along with others till his retirement in May 2003. He was sitting in the room next to the Gallery, sharing it first with Dr. Sadananda Choudhury and later with Dr. (Mrs) Aloka Lahiri. Never he demanded a single room for himself. As the head of the dept. from 1995 to 1997, he helped me and the dept. a lot during admission, examination and teaching assignments given to him ungrudgingly. The seminars, refresher and orientation courses organised in the dept. found him an enthusiastic participaints. He never tried to impose his views on others. We had many academic debates and differences, but that had never turned into bitter conflict. His love for the department is examplary, which one and all in the campus appreciated. He was staying in the Bachelors, flat with his wife Satyabhama, one year junior to me (she still calls me Ashok Bhai) and children and later moved to J.F.

I remember the discussion in the teachers council, whether the Lecturers are to be given M.Phil scholars or not Only the Professors and Reader with Ph.D. were Allowed to became supervisors. I protested and the council allowed

all teachers to be guides for M.Phil scholars. This type of archaec mentality was in vogue in the campus in the early years of my service in the campus. Dr. Mishra was not disturbed, Another important feature was that no Ph.D. scholar was given under their guidance. Today I find many young teachers are better supervisor because their knowledge of new techniques, ideas, unconventional sources and access to morden technology though not born with a silver spoon on his mouth, he reached higher position his career by his hard labour and academic honesty.

The Career Advancement scheme could not be implemented before 1999. Dr. Mishra could not become a professor which he well deserved. I again remember Dr. S. Choudhury also retired as a reader in 1999 from the department. Later Dr. Mishra published two books 'A Kingdom for Sale' and Orissa Paik Militia, basing upon unknown primary sources dug from official British records, He was associate editor of Utkal Historical research Journal Published annually from 1990 and continues till today. He had gone outside Odisha to attend the Indian History Congress. As a teacher and researcher he stands apart in the realm of modern Odisha History.

After his retirement, he wanted (never said openly to anybody) to teach in the department for sometime. Satyabhama expressed his wish to me and Basanta (Prof Basanta Kr. Mallik). We tried to keep him engaged in the teaching programme of the department for some time, atleast till he left the campus. But it could not materialise as was objected by few others. I beleave very strongly that a teacher never retires. The old teachers with long innings in teaching are the gold mines from whom one can extract facts, interpretations, the sources etc. which are of great use to the budding researchers of later times. But that did not happen and Dr. Mishra never come back to teach our students and discuss with scholars on his field of expertise. Working with him for nearly sixteen years, I never find him speaking ill of others. He never spoke about anybody behind his back. He had got some sense of humour which was shared with others on many occasions. The book in honour of Prof. K. S. Behera was broughtout during his headship where he kept the names of Prof. Atul Ch. Pradhan, Dr. Basanta Mallik, Amal Kr. Mishra and myself as editors along with him. This is a great sense of magnamity raraly found in one in the present society, especially among our academic fraternity.

He still used to come to Odisha State Archieves when he was invited. He was a good friend of Dr. Mahesh Prasad Dash. On my Just one month before his sad demise he was in the Archives in a seminar on Paika rebethrn. He stood straight, deelined the tack with conviction and I swa him as a scholar - teacher for the past time. On request to take launch there, he politely seclimed. I could not see him on the last journey.

With humble beginning in life, coming from a lower - middle class family of Tigiria, struggling to complete his education at Christ College while doing a job and then Masters at Vanivihar, research scholar, research assistant, lecturer and reader in the prestigious Dept. of History at Utkal Unviersity was a long saga of struggle to establish himself. He earned his own place in the field of teaching and research in the History of Modern Odisha.

Today on the first death anniversary of Prasanna Sir, I bow down my head at his feet along with hundreds of his students, M.Phil and Ph.D. scholars and admirers. His scholarship will never die and it would inspire many others to take it further with new ideas, source materials and interpretations to make Historical studies richer.



# ଡକ୍ଟର ପ୍ରସନ୍ନ କୁମାର ମିଶ, କିଛି ସ୍ମୃତି ଓ କିଛି ଅନୁଭୂତି

*ଡଃ ବସନ୍ତ କୁମାର ମଲ୍ଲିକ*
ପୂର୍ବତନ ପ୍ରଫେସର ଓ ବିଭାଗୀୟ ମୁଖ୍ୟ,
ସ୍ନାତକୋତ୍ତର ଇତିହାସ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ

ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗରେ ମୁଁ ୧୯୯୬ ମସିହାରେ ଯୋଗ ଦେଇ ବହୁ ବଡ଼ ବଡ଼ ପ୍ରଫେସରମାନଙ୍କ ସହିତ କାର୍ଯ୍ୟ କରିବାର ସୁଯୋଗ ପାଇଲି। କିନ୍ତୁ ପ୍ରସନ୍ନ ବାବୁଙ୍କ ସହିତ ମୁଁ ଯେଉଁଭଳି ମିଶି ପାରିଥିଲି, ଅନ୍ୟମାନଙ୍କ ସହିତ ସେପରି ସଂପର୍କ ହୋଇ ପାରିନଥିଲା। ସେ ଅତ୍ୟନ୍ତ ଭଦ୍ର, ନିରଳସ ଓ ମିଷ୍ଟାଭାଷୀ। ସବୁଠାରୁ ବଡ଼ କଥା ହେଲା ତାଙ୍କର ସମୟାନୁବର୍ତ୍ତୀତା। ତାଙ୍କ କ୍ୱାର୍ଟରରୁ ସେ ଚାଲିଚାଲି ଆସି ଠିକ୍ ସକାଳ ୧୦ଟା ସୁଦ୍ଧା ଡିପାର୍ଟମେଣ୍ଟରେ ପହଞ୍ଚି ଯାଉଥିଲେ। ଅନେକ ସମୟରେ ସେ ଓ ଅଶୋକ ନାଥ ପରିଡ଼ା ସାର୍ ସାଙ୍ଗ ହୋଇ ଡିପାର୍ଟମେଣ୍ଟକୁ ଆସୁଥିଲେ। ପାଖାପାଖି ରୁମ୍‌ରେ ବସୁଥିଲେ ଏବଂ କାର୍ଯ୍ୟସାରି ପାଞ୍ଚଟା ସାଢ଼େ ପାଞ୍ଚଟା ସୁଦ୍ଧା ଘରକୁ ଫେରିଯାଉଥିଲେ। ଏହା ଥିଲା ତାଙ୍କର ପ୍ରତି କାର୍ଯ୍ୟ ଦିବସର କଥା। ପ୍ରତିଦିନ କ୍ଲାସ ନେବା, ପିଲାଙ୍କ ସହିତ ଗବେଷଣା ସମ୍ବନ୍ଧରେ ଆଲୋଚନା କରିବା, ବାକି ସମୟରେ ବନ୍ଧୁମାନଙ୍କ ସହିତ ଗପସପ୍ କରିବାରେ ସମୟ ବିତିଯାଏ। ଗପସପରେ ଖାଲି ଆମୋଦିତ କଥା ନଥାଏ, ଡିପାର୍ଟମେଣ୍ଟରେ କିପରି ସେମିନାର ହେବ, ଜର୍ଣ୍ଣାଲ କିପରି ଛପା ଯିବ କିମ୍ବା ସେମିନାର ପ୍ରୋସିଡିଙ୍ଗ୍ ଛପାଯିବ ଏହିସବୁ କଥା ହିଁ ମୁଖ୍ୟ ପ୍ରସଙ୍ଗ ଗୁଡ଼ିକ ରହିଥାଏ।

ମୁଁ ଯେତେବେଳେ ୧୯୯୮ ମସିହାରେ ଡିପାର୍ଟମେଣ୍ଟରେ ମୋର ସର୍ବ ପ୍ରଥମ ଜାତୀୟ ସଂପାନ ଆୟୋଜିତ କରିଥିଲି ସେ ମୋତେ ବହୁତ ସାହାଯ୍ୟ କରିଥିଲେ। ଉତ୍କଳ ବିଶ୍ୱବିଦ୍ୟାଳୟରେ କିପରି ଗୋଟିଏ ଜାତୀୟ ସଂପାନ ମୁଁ କରିପାରିବି, ସେଥିପାଇଁ ମୁଁ ବହୁତ ବ୍ୟସ୍ତ ହୋଇଯାଇଥିଲି। ତାଙ୍କ ସହିତ ଆଲୋଚନା କଲାପରେ ସାଂଗଠନିକ କାର୍ଯ୍ୟ ମୋ ପାଇଁ ବହୁତ ସହଜ ହୋଇଗଲା। ସେମିନାର ଆଲୋଚନାର ଆରମ୍ଭରୁ ସେମିନାର ସଂଗଠିତ ହେବା ପର୍ଯ୍ୟନ୍ତ ଆମ ଭିତରେ ଆଲୋଚନା ଓ କାର୍ଯ୍ୟ ତଦାରଖ ଚାଲୁ ରଖିଥାଏ। ତାଙ୍କର ଉପଦେଶ ଗୁଡିକ ମୋ ପାଇଁ ବହୁ ମୂଲ୍ୟବାନ ଥିଲା, ଯାହା ମୁଁ କେବେ ଭୁଲି ପାରିବି ନାହିଁ। ସେମିନାର ସଫଳତା ଦିଗରେ ଆଉ ଜଣଙ୍କର ବହୁ ଅବଦାନ ଥିଲା। ସେ ହୋଇଛନ୍ତି ଅଳକା ମାଡାମ୍ (ପ୍ରଫେସର ଅଳକା ଲହରି)। ସେମିନାର ହେବା ପୂର୍ବଦିନର ସଂଧ୍ୟା। କଲିକତାରୁ ଟ୍ରେନ୍ ଯୋଗେ ଗେଷ୍ଟ ଆସିବେ। ତାଙ୍କୁ ଷ୍ଟେସନ୍‌ରୁ ସ୍ୱାଗତ କରି ଆଣିବା ନିମନ୍ତେ ଅଳକା ମାଡାମଙ୍କୁ ତାଙ୍କ କାର୍ ନେଇ ଆସିବା ପାଇଁ ଅନୁରୋଧ କରିଥିଲି। ସେ ଦିନ ଟିକେ ବିଳମ୍ବିତ ସନ୍ଧ୍ୟା ପର୍ଯ୍ୟନ୍ତ ମୁଁ ଡିପାର୍ଟମେଣ୍ଟରେ ରହିଥିଲି। ଅଳକା ମାଡାମ୍ ଆସିବା ପରେ ଗେଷ୍ଟଙ୍କୁ ଆଣି ଆମେ ବିଶ୍ୱବିଦ୍ୟାଳୟ ଅତିଥି ଭବନରେ ଛାଡିଥିଲୁ।

ପ୍ରଶନ୍ନ ସାର୍‌ଙ୍କର ଓଡ଼ିଶା ଇତିହାସରେ ଗବେଷଣା ଅତ୍ୟନ୍ତ ଉଚ୍ଚକୋଟୀର। ତାଙ୍କର ପୁସ୍ତକ "Political Unrest in Orissa in the 19th Century" ଅତ୍ୟନ୍ତ ଉଚ୍ଚମାନର ଗବେଷଣାତ୍ମକ ପୁସ୍ତକ। ତାଙ୍କର ଗବେଷକ ଜୀବନ ଉତ୍କଳ ବିଶ୍ୱବିଦ୍ୟାଳୟର ପରିଜା ପାଠାଗାର ଓ ଓଡିଶା ରାଜ୍ୟ ଅଭିଲେଖାଗାରରେ ବିତାଇ ଥିଲେ ଏବଂ ଆଧୁନିକ ଇତିହାସର ସମ୍ବଳ ଗୁଡିକ ସମ୍ବନ୍ଧରେ ତାଙ୍କର ଯଥେଷ୍ଟ ଜ୍ଞାନ ଥିଲା।

ତାଙ୍କର ଅନ୍ୟ ଦୁଇଟି ପୁସ୍ତକ "Last days of the Oriya Militia" 1996 ଓ "A kindgom for sale" 1998 ଆଧୁନିକ ଓଡ଼ିଶା ଇତିହାସ ପ୍ରତି ଅନନ୍ୟ ଅବଦାନ। ଛାତ୍ର ଛାତ୍ରୀମାନେ ଏ ଦୁଇଟି ପୁସ୍ତକରୁ ବହୁ ତଥ୍ୟ ପାଇପାରିବେ। ଏଦୁଇଟି ପୁସ୍ତକ ବହୁ ମୌଳିକ ଉପାଦାନକୁ ନେଇ ରଚନା କରାଯାଇଛି।

ସେ ଉତ୍କଳ ବିଶ୍ୱବିଦ୍ୟାଳୟ ଇତିହାସ ବିଭାଗର ଇତିହାସ ସୁନ୍ଦରଭାବେ ରଚନା କରିପାରିଥାନ୍ତେ। ପ୍ରଫେସର ମନ୍ମଥ ନାଥ ଦାସଙ୍କ ସମୟରୁ ତାଙ୍କ ଅବସର ପର୍ଯ୍ୟନ୍ତ ବହୁ ଘଟଣା ପ୍ରବାହର ସେ ସାକ୍ଷୀ ବା ଅନ୍ତର୍ଭୁକ୍ତ। ତାଙ୍କର ଅବର୍ତ୍ତମାନ ଏହିଭଳି ଭାବରେ ସମାଜ ପାଇଁ ବଡ଼ କ୍ଷତି ପହଞ୍ଚିଯାଇଛି। ଇତିହାସ ଜଗତ ତାଙ୍କର ଅନୁପସ୍ଥିତିକୁ ଭଲ ଭାବରେ ଅନୁଭବ କରୁଛି ସେ ଯେଉଁଠି ଥାଆନ୍ତୁ ଭଲରେ ଥାଆନ୍ତୁ।






# ଡ. ପ୍ରସନ୍ନ କୁମାର ମିଶ୍ର (ଉତ୍କଳ); ଏକ ଅବିସ୍ମରଣୀୟ ସୁଖଦ ସ୍ମୃତି

*ପ୍ରଶାନ୍ତ କୁମାର ପ୍ରଧାନ, ଅତଶପୁର*

ଏବେ ବଡ ବିଚିତ୍ର ଲାଗୁଛି, ନିଜକୁ ସ୍ଥିର ରଖି କିଛି ଲେଖିଲା ବେଳକୁ ଆଖିରେ ଲୁହ ପୁରିଯାଉଛି। ବିଗତ ୩୦ବର୍ଷ ଧରି ଏକ ଆଶୀର୍ବାଦ, ଯାହା ମୋତେ ନିରନ୍ତର ନିଜ ଭିତରେ ପ୍ରେରଣା ଦେଇ ଆସୁଥିଲା, ଜ୍ଞାତ ହେଉ ବା ଅଜ୍ଞାତରେ ହେଉ, ଯେଉଁ ସ୍ନେହ ମୋତେ ସନ୍ତୁଳିତ କରି ରଖୁଥିଲା, ତାଙ୍କ ଆବର୍ତ୍ତମାନରେ ଧର୍ଯ୍ୟର ବନ୍ଧ ଭାଙ୍ଗିଯିବା ସ୍ୱାଭାବିକ। ଡ. ପ୍ରସନ୍ନ କୁମାର ମିଶ୍ର ମୋ ପାଇଁ କେବଳ ପ୍ରେରଣାର ଉତ୍ସ ନଥିଲେ, ମୋ ଜୀବନର ବହୁ ଘଡିସନ୍ଧି ମୁହୂର୍ତ୍ତର ଦିଗ୍‌ଦର୍ଶକ ଥିଲେ। ଏସବୁ ଭୁଲିବା ସମ୍ଭ ନୁହେଁ।

ରେଭେନ୍‌ସାରୁ ଇତିହାସରେ ଗ୍ରାଜୁଏସନ ପାସ୍‌କରି ୧୯୮୨ରେ ମୁଁ ଯେତେବେଳେ ବାଣୀବିହାରକୁ ପିଜି କରିବାକୁ ଆସିଲି ସେତେବେଳେ ମୋର ଦେଖା ହୁଅନ୍ତି ଜଣେ ସୁଦର୍ଶନ ଯୁବକ, ସୌମ୍ୟ, ହୃଷ୍ଟପୃଷ୍ଟ, ଯିଏ ଡିପାର୍ଟମେଣ୍ଟର ରିସର୍ଚ୍ଚ ଆସିଷ୍ଟାଣ୍ଟ ରୂପେ କାର୍ଯ୍ୟରତ ଥିଲେ। ନାମ. ଡ. ପ୍ରସନ୍ନ କୁମାର ମିଶ୍ର ଆସିଷ୍ଟାଣ୍ଟ ସୁପରିନଟେଣ୍ଟ ଥିଲେ। ତେଣୁ ସ୍ୱାଭାବିକ ଯେ. ସାର୍‌ଙ୍କ ସହ ସମ୍ପର୍କ ନିକଟତର ହୋଇଥିଲା। ହଷ୍ଟେଲ, ଡିପାର୍ଟମେଣ୍ଟ, କାମ୍ପସ ଯେଉଁଠି ମୁଁ ସାରଙ୍କୁ ଦେଖେ, ସାର ସୁନ୍ଦର ହସଟିଏ ହସି ଦିଅନ୍ତି। ପେଟ ପୂରିଯାଏ। ସାର୍ ସେତେବେଳେ କ୍ୟାମ୍ପସ୍‌ରେ ରହୁଥାନ୍ତି ପରିବାର ସହ। ପ୍ରସନ୍ନ ସାର ଓ ସତ୍ୟଭାମା ମ୍ୟାଡାମ ବୋଧେ ସେତେବେଳେ ପୁରା ବାଣୀବିହାର କାମ୍ପସ୍‌ର ସବୁଠାରୁ ଆକର୍ଷଣୀୟ ଯୋଡି ଥିଲେ। ଆମ ଇତିହାସ ଡିପାର୍ଟମେ□ର ପିଲାମାନଙ୍କ ଏହା ଚର୍ଚ୍ଚା ଓ ଗୌରବର ବିଷୟ ଥିଲା।

ବାଣୀବିହାରର ପାଠପଢା ସରିଗଲା। ସାର ଅଧ୍ୟାପକ ହେଲେ, ପରେ ରିଡରକୁ ପ୍ରମୋସନ ପାଇଲେ। ତାପରେ ଆଉ ଦେଖାଚାହାଁର ଅବସର ମିଳି ନଥିଲେ। ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଏମ.ଫିଲ. ସାରିଲାବେଳକୁ ମୋ ମୁଣ୍ଡରେ ଚଡକ ପଡିଲା, ମୋ ବାପା ହଠାତ୍ ଚାଲିଗଲେ। ଘରେ ଭାଇ ଭଉଣୀ ଆମେ ୭ଜଣ, କାଠ ହୋଇ ଯାଇଥିବା ବୋଉ ଓ ଅତ୍ୟନ୍ତ ଦୁଃଖରେ ଭାଙ୍ଗି ପଡୁଥିବା ମୋ ଜେଜେବାପା। ମୁଁ ସେତେବେଳେ ୟୁଜିସିର ଜୁନିୟର ସ୍କଲାରସିପ୍ ପାଉଥାଏ। କିନ୍ତୁ ଘର ଅବସ୍ଥା ଅସମ୍ଭାଳ। ନିମ୍ନ ମଧ୍ୟବିତ୍ତ ଗ୍ରାମୀଣ ପରିବାରରେ ଘରର ମୁଖ୍ୟ ହଠାତ୍ ଚାଲିଗଲେ ଘର ଦୋହଲି ଯାଏ। ଛୋଟ ଛୋଟ ଭାଇ ଓ ଭଉଣୀମାନଙ୍କ ଶୂନ୍ୟ ମୁହଁ ମୋତେ ବହୁତ ବିଚଳିତ କରୁଥାଏ। ବାପାଙ୍କ ସୁଦ୍ଧିକ୍ରିୟା ପରେ ମୋର ସିଭିଲ ସର୍ଭିସ ମେନସ୍ ପରୀକ୍ଷା। ଆସି ଦେଲି। ହେଲେ ମୁଁ ଭିତରେ ଭିତରେ ଭାଙ୍ଗି ପଡୁଥିଲି। ମୁଁ ଜାଣି ସାରିଥିଲି ଯେ ମୋର ଦିଲ୍ଲୀ ରହଣି ସରିଗଲା।

ସ୍ଥିର କଲି ଓଡ଼ିଶା ଆସି ଉତ୍କଳ ବିଶ୍ୱବିଦ୍ୟାଳୟରେ ପିଏଚ.ଡି. କରିବି। ଦିଲ୍ଲୀର ସାଙ୍ଗମାନେ ବହୁତ ମନା କଲେ। ହେଲେ ମୁଁ ପଳେଇ ଆସିଲି। ଆଉ ୩ ବର୍ଷର ସ୍କଲାରସିପ୍ ଥାଏ। ଜଣେ କହିଲେ ସ୍କଲାରସିପ ଟ୍ରାନ୍ସଫର କରି ନେଇହେବ।

ସେତେବେଳେ ବାଣୀବିହାରର ଇତିହାସ ବିଭାଗରେ ବହୁ ଖ୍ୟାତନାମା ପ୍ରଫେସର ଥାନ୍ତି। ଗାଇଡ କାହାଙ୍କୁ କଲେ ଭଲ ହେବ ବୁଝିବା ପାଇଁ ମୁଁ ଇତିହାସ ବିଭାଗକୁ ଗଲି। ସେଠି ଭେଟିଲି ପ୍ରସନ୍ନ ସାରଙ୍କୁ। ଉଦ୍ଦେଶ୍ୟ ଥିଲା ତାଙ୍କ ସହ ବିମର୍ଷକରି ମୁଁ ମୋର ବାଟ ସ୍ଥିର କରିବି। ମୋ ଅବସ୍ଥା ବିଷୟରେ କହିଲି। ଗାଁ ଆମର ଭୁବନେଶ୍ୱରରୁ ମାତ୍ର ୨୨ କିମି.। ଘରକଥା ବୁଝି ଏଠି ଗବେଷଣା କାମ ବି କରି ପାରିବି। ଅତି କମ୍‌ରେ ଅଧ୍ୟାପକ ଚାକିରୀଟିଏ ଦରକାର ଥିଲା। ଓଡ଼ିଶାରେ ସେତେବେଳେ ନେଟକୁ

ଅଧ୍ୟାପକ ବାଛିବାବେଳେ କୌଣସି ପ୍ରାଧାନ୍ୟ ଦିଆଯାଉ ନଥାଏ। ସାର ମୋତେ ପ୍ର. କରୁଣା ସାଗର ବେହେରା ଓ ପ୍ର. କିଶୋରୀମୋହନ ପାତ୍ରଙ୍କ ନାମ କହିଲେ।

ସେଇଦିନ ମୁଁ ସାରଙ୍କ ସହ କଥାବାର୍ତ୍ତା ସାରି ଗଲି ଷ୍ଟେଟ ଆରକାଇଭସ୍‌କୁ, ସେଠି କ୍ୟାଟାଲଗ ଖୋଜୁ ଖୋଜୁ ଦେଖିଲି ଡ. ପ୍ରସନ୍ନ କୁମାର ମିଶ୍ରଙ୍କ ପୁସ୍ତକ, Political Unrest in Orissa in the 19th Century Anti British Feudal and Agrarian Risings` ବହିଟିକୁ ମୁଁ ସେଇଠି ପଢି ସାରିଦେଲି। ମୁଁ ଆଧୁନିକ ଭାରତ ଇତିହାସର ଛାତ୍ର ଥିଲି। ମୁଁ ଚାହୁଁଥିଲି ସେଇ ବିଷୟର କୌଣସି ଟପିକ ନେଇ କାମ କରିବି।

ସାରଙ୍କ ବହି ସାରିଲା ବେଳକୁ ମୋର ସାରଙ୍କ ପ୍ରତି ଥିବା ଧାରଣ ସମ୍ପୂର୍ଣ୍ଣ ବଦଳି ସାରିଥିଲା।

୧୯୮୫-୯୦ ମସିହା ବେଳକୁ ବାଣୀବିହାର ଇତିହାସ ବିଭାଗରେ ଗବେଷଣା ମୁଖ୍ୟତ ଓଡ଼ିଆ ଜୀବନର ମୁଖ୍ୟଧାରାକୁ ନେଇ ଆଧାରିତ ଥିଲା। ଏଥିରେ ଓଡ଼ିଶାର ଐତିହ୍ୟ, ପରମ୍ପରା, ମନ୍ଦିର, ମୂର୍ତ୍ତିକଳା, ରାଜାମାନଙ୍କର ଶାସନ, ସ୍ୱାଧୀନତା ଆନ୍ଦୋଳନ ଆଦି ବିଷୟଗୁଡ଼ିକର ପ୍ରାଧାନ୍ୟ ରହୁଥିଲା, ଯାହା ସ୍ୱାଭାବିକ। ଓଡ଼ିଶା ଇତିହାସ ରଚନାର ଏହା ଥିଲା ସୁବର୍ଣ୍ଣ ଯୁଗ। ସବୁ ବିଶ୍ୱବିଦ୍ୟାଳରେ ଏହି ଧାରା ଚାଲିଥାଏ। ଏହି ସମୟର ଗବେଷକମାନେ ଓଡ଼ିଶା ଇତିହାସର ଅସ୍ଥି-ପଞ୍ଜରା ତିଆରି କରୁଥାନ୍ତି ଓ ତା ଉପର ଚର୍ମ-ଛାଉଣୀର ପରିକଳ୍ପନା କରୁଥାନ୍ତି। ସେତେବେଳକୁ ଓଡ଼ିଶା ଇତିହାସର ପୁସ୍ତକ ହାତଗଣତି। ଆଧୁନିକ ଓଡ଼ିଶା ଇତିହାସରେ ଇଂରେଜମାନଙ୍କ ଓଡ଼ିଶା ଅଧିକାର, ସେମାନଙ୍କ ଶାସନ, ଭାଷା ଆନ୍ଦୋଳନ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଧାରା, ସ୍ୱାଧୀନତା ଆନ୍ଦୋଳନ, ତା'ର ପ୍ରସିଦ୍ଧ ସଂଗ୍ରାମୀ ମାନଙ୍କର ଭୂମିକା, ଗାନ୍ଧୀ ଓ ତାଙ୍କ ବ୍ୟକ୍ତିତ୍ୱର ଅଖଣ୍ଡ ପ୍ରଭାବ, ପ୍ରାଦେଶିକ ନେତୃତ୍ୱ ଓ ଆନ୍ଦୋଳନର ଘଟଣାସବୁ ତନ୍ନ ତନ୍ନ ଭାବେ ଆଲୋଚିତ ହେଉଥାଏ। ହେବା ମଧ ଉଚିତ ଥିଲା।

ସେତେବେଳେ ଜେ.ଏନ.ୟୁ. ବା ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଇତିହାସ ଅଧୟନ ଓ ଗବେଷଣାର ଆଧାର, ପ୍ରଣାଳୀ ଓ ଉଦ୍ଦେଶ୍ୟ ପୁରା ଜାତୀୟ ଚର୍ଚ୍ଚାରେ। ମାର୍କସବାଦୀ ଦର୍ଶନକୁ ଆଧାରକରି ଇତିହାସରେ ଗବେଷଣା ଲୋକପ୍ରିୟତାର ଶୀର୍ଷରେ। ଆସିଲା ସବଲଟର୍ଣ୍ଣ ଆଉ ଆନାଲସ୍ ଯୁଗ। ଆମ ଯୁବ ଗବେଷକମାନଙ୍କ ଆଖିରେ ନୂଆ ତାଜା ଚମକ। ସାଧାରଣ ମଣିଷକୁ ଇତିହାସରେ ସ୍ଥାନ ମିଳିନି, ତାକୁ ସେମାନଙ୍କୁ ଦେବାକୁ ହେବ। ଏହା ସେମାନଙ୍କ ହକ୍। ସାମାଜିକ ଇତିହାସର ଗବେଷଣା ଜମାରୁ ହେଉନାହିଁ, କେବଳ ରାଜନୈତିକ ଇତିହାସ ପୁସ୍ତକଗୁଡ଼ିକର କଳେବର ସବୁକୁ ମାଡି ବସିଛନ୍ତି। ସାମାଜିକ ବିଶ୍ଳେଷଣ ବିନା ଇତିହାସ ସମ୍ପୂର୍ଣ୍ଣ ନୁହେଁ। ଓଡ଼ିଶାରେ ଇତିହାସ ଗବେଷଣା କ୍ଷେତ୍ରରେ ଏସବୁକୁ ନେଇ କାଁ ଭାଁ ଆଲୋଚନା ହୋଇଥିଲେ ମଧ ମୁଖ୍ୟତଃ ମୁଖ୍ୟଧାରାର ଇତିହାସ ହିଁ ମୁଖ୍ୟ ଲକ୍ଷ୍ୟ ଥାଏ।

ଦିଲ୍ଲୀରେ ଓଡ଼ିଆ ଗବେଷକମାନଙ୍କ ଧାରଣା ଥାଏ ଯେ ଓଡ଼ିଶାରେ ଗବେଷଣା ମାନ୍ଦା ଓ ଏହାର ଆଲୋଚନା ପାରମ୍ପରିକ। ସେମାନେ କହୁଥିଲେ ଯେ, ଏଠି ଇତିହାସର ଆଲୋଚନାରେ ଏଲିଟି ବା ମୁଖ୍ୟଧାରାକୁ ଅଧିକ ପ୍ରାଧାନ୍ୟ ଦିଆଯାଉଛି, ଫଳରେ ସାଧାରଣ ଜନତାଙ୍କ ଦାନ ବା କାର୍ଯ୍ୟକଳାପ ସବୁକୁ ଅଣଦେଖା କରାଯାଉଛି। କିନ୍ତୁ ସେମାନେ ବୁଝି ପାରୁନଥିଲେ ଯେ, ଓଡିଶାରେ ସେତେବେଳେ ଗବେଷଣା କରୁଥିବା ଲୋକଙ୍କ ସଂଖ୍ୟା ନଗଣ୍ୟ ଥିଲା ଓ ମୂଳ ଇତିହାସ ଲେଖିବା ଓ ତଥ୍ୟସବୁକୁ ସଂରକ୍ଷିତ କରିବା ବହୁତ ଜରୁରୀ ଥିଲା।

ସେତିକିବେଳେ ଷ୍ଟେଟ ଆରକାଇଭସରେ ପ୍ରସନ୍ନ ସାରଙ୍କ ବହି ପଢିବା ମୋର ଜୀବନର ଗତିପଥ ବଦଳାଇ ଦେଇଥିଲା। ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିବା ଡ. ପ୍ରସନ୍ନ କୁମାର ମିଶ୍ର ବି ଏପରି ଉଚ୍ଚକୋଟୀର ଗବେଷଣା କରି ଏତେ ମୂଲ୍ୟବାନ ପୁସ୍ତକ ରଚନା କରିପାରନ୍ତି-ମୁଁ ବିଶ୍ୱାସ କରିପାରୁନଥିଲି। ଓଡ଼ିଶାର ଲୋକ-ବିପ୍ଳବକୁ ଆଧାର କରି ଏ ପୁସ୍ତକ ରଚିତ

ହୋଇଥିଲା। ନିଖୁଣ ଓ ସଠିକ୍। କୌଣସି ଶବ୍ଦ ମୂଲ୍ୟହୀନ ବା ଅବାନ୍ତର ନୁହେଁ। ନିଜ ଆଲୋଚନା ବେଳେ ରଚୟିତା କମାରୁ ମନକୁମନ କିଛି ମନ୍ତବ୍ୟ ଦେଇ ନାହାଁନ୍ତି। ପାଇକ ବିଦ୍ରୋହ ଓ ଅନ୍ୟାନ୍ୟ ପ୍ରସିଦ୍ଧ ପ୍ରଖ୍ୟାତ ଗଣବିଦ୍ରୋହ ସବୁକୁ ଏକ ସଫଳ ଐତିହାସିକ ଦୃଷ୍ଟିକୋଣ ନେଇ ସମ୍ପୂର୍ଣ୍ଣ ନିଷ୍ପକ୍ଷତା ସହ ଘଟଣାଗୁଡ଼ିକର ଆଲୋଚନା କରିବା ବିରଳ। ଡ. ମିଶ୍ର କିନ୍ତୁ ସେଥିରେ କୃତକାର୍ଯ୍ୟ ହୋଇଥିଲେ। ପାଇକ ବିଦ୍ରୋହ ପରି ପ୍ରଖ୍ୟାତ ଘଟଣାକୁ ନେଇ ସମସ୍ତ ମିଥ୍ୟା ଲୋକଗାଥାକୁ କଡରେ ରଖି ସଠିକ ତଥ୍ୟ ଆଧାରରେ ଡ. ମିଶ୍ର ଚମତ୍କାର ଉପସ୍ଥାପନା କରିଛନ୍ତି। ଇତିହାସର ଜଣେ ଉପଯୁକ୍ତ ପାଠକ ହିଁ ଏ କଥା ବୁଝି ପାରିବ।

ଏକଥା ନୁହେଁ ଯେ ମୁଁ ଆଗରୁ ଲୋକ ସଂଗ୍ରାମଗୁଡିକର ଇତିହାସ ପୁସ୍ତକ ପଢି ନଥିଲି। ପ୍ରଖ୍ୟାତ ଏବଂ ସବୁ ବର୍ଗର ଐତିହାସିକ ମାନଙ୍କର ଗବେଷଣା ଦୃଷ୍ଟିକୋଣ ସହ ମୁଁ ଭଲ ଭାବରେ ପରିଚିତ ଥିଲି। ବିଭିନ୍ନ ଆଞ୍ଚଳିକ ବିଶ୍ୱବିଦ୍ୟାଳର ଗବେଷଣାକୁ ଉପଲବ୍ଧ ତଥ୍ୟ ସବୁକୁ ନେଇ ଜାତୀୟ ସ୍ତରର ବି ଚର୍ଚ୍ଚା ହେଉଥାଏ। ହେଲେ ଉତ୍କଳବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକ ଯେ ସମସାମୟିକ ଉତ୍ସାହକୁ ନେଇ ଏପରି ଉଚ୍ଚକୋଟୀର ଇତିହାସ ରଚନା କରିପାରନ୍ତି, ତାହା ସେତେବେଳେ ଜଣାଇ ଦିଆଯାଇନଥିଲା। ଡ. ମିଶ୍ରଙ୍କ ପୁସ୍ତକରେ ଗରିବ ମେହେନତି ମଣିଷର ଚିତ୍ର ସ୍ୱଷ୍ଟ ରୂପେ ପ୍ରତିଫଳିତ ହୋଇଥିଲା। ଓଡ଼ିଶାର ସେ ସମୟର ସାମାଜିକ ବିଜ୍ଞାନର ଗବେଷଣା ପାଇଁ ଏହା ଏକ ଯୁଗାନ୍ତକାରୀ ପଦକ୍ଷେପ ଥିଲା। ମୁଁ ବୁଝି ପାରୁନଥିଲି ଏତେ ଚମତ୍କାର ଓ ଉଚ୍ଚକୋଟୀର ଗବେଷଣାରୁ ନିସୃତ ଏ ଭବ୍ୟ ପୁସ୍ତକ କିପରି ଅନ୍ୟମାନଙ୍କୁ ପ୍ରଭାବିତ କରିନଥିଲା।

ସମାଜର ଉପେକ୍ଷିତ ମଣିଷମାନଙ୍କ ପାଇଁ କାହାର ଦରଦ ନଥାଏ। ମାତ୍ର ପୁସ୍ତକଟି ପଢିବାପରେ ମୋତେ ଲାଗିଲା ସାର କଣ ଜଣେ ବିପ୍ଲବୀ ! ଯିଏ ସମକାଳୀନ ଓଡିଆ ଗବେଷଣାର ପାରମ୍ପରିକ ମାପକାଠିରୁ ନିଜ ମୁକ୍ତ କରିବାକୁ ଚାହୁଁଥିଲେ। ସେଥିପାଇଁ ତାଙ୍କୁ ନାନା ଉପେକ୍ଷା ଭୋଗିବାକୁ ପଡିଲା। ପୁସ୍ତକରେ ଘଟଣାଗୁଡ଼ିକର ବିବରଣୀ ସହ ଇଂରେଜମାନଙ୍କ ବିପକ୍ଷରେ ସାହାସର ସହ ଲଢ଼େଇ କରିଥିବା ବୀରମାନେ ଭୋଗିଥିବା ବିଭିନ୍ନ ବର୍ଷପାଇଁ ଜେଲଦଣ୍ଡ, ନିର୍ବାସନ ବା ମୃତ୍ୟୁଦଣ୍ଡ- ସେମାନଙ୍କ ପୁରା ଏକ ଲିଷ୍ଟ ଏ ପୁସ୍ତକରେ ଦିଆଯାଇ ଥିଲା। ଆରକାଇଭସର ଧୂଳି ଧୂସରିତ ଥାକଗୁଡ଼ିକରୁ ହଠାତ୍ ମୂର୍ତ୍ତିମନ୍ତ ହୋଇଯାଇଥିଲେ ଅଜଣା ମହାନ ବିପ୍ଲବୀମାନେ। ଯେଉଁ ପ୍ରୟାସ ପ୍ରସନ୍ନ ସାର ୧୯୯୦ ମସିହାରେ କରିସାରିଥିଲେ, ପ୍ରାୟ ୩୦ ବର୍ଷପରେ ଓଡ଼ିଶା ସରକାର ତାକୁ ପୁଣି ଆରମ୍ଭ କଲେ ୨୦୨୦ ମସିହାରେ, କେତେ ବିଡ଼ମ୍ବନାର କଥା।

ମୁଁ ସେଦିନ ସ୍ଥିର କଲି ପ୍ରସନ୍ନ ସାର ମୋର ଗାଇଡ ହେବେ। ମୁଁ ସାରଙ୍କୁ ଭେଟିଲି ଓ ଆଲୋଚନା ବି କଲି। ପିଜି ଡିପାର୍ଟମେଣ୍ଟର ହାଇରାର୍କୀ ବଡ ଜଟିଳ। ସାର ରାଜି ହେଲେ ବଡ କଷ୍ଟରେ, ମୋର କାମ ହେଲା ମୁଁ ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ମୋର ସ୍କଲାରସିପ ଟ୍ରାନସଫର କରି ଆଣିବି ଉତ୍କଳକୁ। ମୋତେ ଆଗ ଉତ୍କଳର ଡିପାଟମେଣ୍ଟରେ ରେଜିଷ୍ଟ୍ରେସନ କରିବାକୁ ପଡିବ। ତାପରେ ଅନ୍ୟ କଥା। ରେଜିଷ୍ଟ୍ରେସନ ପରେ ମୁଁ ସ୍କଲାରସିପ ସେଲକୁ ଗଲି, ହେଲେ ସେଠି କେହି କିଛି ବୁଝିପାରୁ ନଥାନ୍ତି। ଦାୟୀତ୍ୱରେ ଥିବା ଜଣେ ସାର, ଯିଏ କୌଣସି ଆଞ୍ଚଳିକ କଲେଜରୁ ଆସି ଜଏନ କରିଥାନ୍ତି ଓ ସ୍କଲାରସିପ ଦାୟୀତ୍ୱରେ ଥାନ୍ତି, ସେ ମତେ ଯାଡୁସାଡୁ ବିଚିତ୍ର କଥା କହିଲେ। ସେ ମୋ କଥା ବୁଝିପାରୁ ନଥାନ୍ତି, ନା ମୁଁ ତାଙ୍କ କଥା। ଯାଡେ ସ୍କଲାରସିପର ଲୋଭ, ସାଡେ ଘରର ସମସ୍ୟା। ସାରଙ୍କୁ କହିଲି, ସେ କହିଲେ ସିଧାକଥା, ତୁମେ ଯଦି ଏଠି ରିସର୍ଚ୍ଚ କର ତେବେ ସ୍କଲାରସିପ୍ କଥା ଛାଡ। ଏମାନେ ଏଠି ସହଯୋଗ କରିବେ କମ୍, ହଇରାଣ କରିବେ ବେଶି।

ମୋର ବିଷୟ ଥିଲା ଓଡ଼ିଶାରେ ଗାନ୍ଧୀ ଆନ୍ଦୋଳନର ଇତିହାସ। ଏହି ବିଷୟରେ ବହୁତ ଚର୍ଚ୍ଚା ହୋଇ ସାରିଥିଲା। ମାତ୍ର ମୋତେ ଲାଗୁଥିଲା ଯେ, ଚର୍ଚ୍ଚା କେଉଁଠି ସାଧାରଣ କର୍ମୀମାନଙ୍କୁ ଉପେକ୍ଷା କରୁଛି। ଆନ୍ଦୋଳନର ଗତି ଓ ନେତୃସ୍ଥାନୀୟ କର୍ମୀମାନଙ୍କର କାର୍ଯ୍ୟକଳାପ ଛଡା ଏଥିରେ ସାଧାରଣ କର୍ମୀମାନଙ୍କ ବିଷୟରେ କିଛି ସଂଗ୍ରହ କରାଯାଇନାହିଁ। କେବଳ ସେତିକି

ନୁହେଁ, ସ୍ୱାଧୀନତା ଆନ୍ଦୋଳନ ଭିତରେ ବହୁ ସମୟରେ ଗୋଷ୍ଠୀ ବିବାଦ ବି ଆନ୍ଦୋଳନକୁ ଦିଗହରା କରିଛି। ବଡ ବଡ କର୍ମୀମାନଙ୍କ ମଧ୍ୟରେ କ୍ଷମତା ଲଢ଼େଇ ମଧ୍ୟ କିଛି କମ୍ ନଥିଲା। ମୁଁ ସେତେବେଳେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଗବେଷକମାନଙ୍କର କିଛି ବହି ପଢିଥାଏ। କିନ୍ତୁ ସେମାନଙ୍କର ସମସ୍ତ ତର୍ଜମାକୁ ମୁଁ ଗ୍ରହଣ କରିପାରୁ ନଥାଏ। ବିଶେଷକରି ଭାରତୀୟ ସ୍ୱାଧୀନତା ଆନ୍ଦୋଳନ କେବଳ ଏଲିଟି ଆନ୍ଦୋଳନ, ଏହା କ୍ଷମତା ଆହରଣର ଏକ ମାର୍ଗ ବା ଗାନ୍ଧୀଙ୍କ ସମେତ- ଉପରୁ ତଳଯାଏ ଗୋଟିଏ ଗୋଷ୍ଠୀ ଏହି ଆନ୍ଦୋଳନର ସ୍ରଷ୍ଟା ଓ ଭାଗ୍ୟ ବିଧାତା ଓ ଏମାନଙ୍କ ମଧ୍ୟରେ ଦେଶଭାବନାର କିଛି ଆଭାସ ନଥିଲା ବୋଲି ଯୁକ୍ତିକୁ ମୁଁ ଗ୍ରହଣ କରିପାରୁ ନଥାଏ, ମାତ୍ର କିଛି ପରିମାଣରେ କ୍ଷମତା କନ୍ଦଳ ଯେ, ଜାତୀୟ ଆନ୍ଦୋଳନକୁ ପ୍ରଭାବିତ କରୁଥିଲା, ତାହା ମୋତେ ପ୍ରତ୍ୟୟ ହେଉଥାଏ। ରାଜା ଜମିଦାର ଓ ଶିକ୍ଷିତମାନେ ସାଧାରଣ କର୍ମୀଙ୍କୁ ବ୍ୟବହାର କରି, ବିଶେଷ ଭାବରେ, ଆନ୍ଦୋଳନର ଶେଷ ଆଡକୁ, କ୍ଷମତା ପାଇବା ପାଇଁ ଲାଳାୟିତ ଥିଲେ, ତାହା ଜଣା ଯାଉଥାଏ। କିଛି ବଡ ବଡ ଗାନ୍ଧିବାଦୀ ନେତାମାନଙ୍କୁ ଯେ ଆବଶ୍ୟକତାରୁ ଅଧିକ ଗୁରୁତ୍ୱ ଦିଆଯାଉଛି ଓ ସାଧାରଣ କର୍ମୀଙ୍କ ସାମାଜିକ ସ୍ଥିତି, ସେମାନେ କେଉଁ ମାନସିକତାକୁ ନେଇ ଆନ୍ଦୋଳନକୁ ଆସିଥିଲେ ବା ସେମାନଙ୍କର ଆଶା, ଆଗ୍ରହ, ସ୍ୱପ୍ନ, ଜୀବନ ଯନ୍ତ୍ରଣା କିଛି ଆଲୋଚନା ହେଉନାହିଁ।

ସାରଙ୍କୁ ଏ ଟପିକ ବିଷୟରେ କହିଲି, ସାର କାବା ହୋଇ ମନାକଲେ। ଏହା ଅତି ବିବାଦିତ ବିଷୟ ହୋଇଯିବ ବୋଲି ମତେ କହିଲେ। ସାରଙ୍କ ମୁଁ ପ୍ରଥମ ସ୍କଲାର, ସାର ରିସ୍କ ନେବାକୁ ଚାହୁଁ ନଥିଲେ। ସାର ସମୟ ନେଲେ। ମାତ୍ର ମୁଁ ଅନୁରୋଧ କରିବାରୁ ସାର କହିଲେ, ଯେ, ଠିକ୍ ଅଛି, ହେଲେ ତୁମେ ଲେଖିଲା ବେଳେ ସାବଧାନ ହୋଇ ଲେଖିବ। କାହାକୁ ସିଧା ବ୍ୟକ୍ତିଗତ ଭାବରେ ସମାଲୋଚନା କରିବନାହିଁ। ଦୁଇଜଣ ସାହାସ କଲୁ, ଦେଖାଯାଉ କଣ ହେଉଛି।

ସାରଙ୍କ ଗବେଷଣାରେ ଅଦ୍ଭୁତ ଜ୍ଞାନ ଓ ଦଖଲ। ପୁରା ଆରକାଇଭସ ତାଙ୍କ ନଖ ଦର୍ପଣରେ। ଓଡ଼ିଶା ଆରକାଇଭସ ଦିଲ୍ଲୀର ନାସନାଲ ଆରକାଇଭସ ପରି ନୁହଁ। ଏଠି ସବୁ ଅବ୍ୟବସ୍ଥିତ। ଷ୍ଟାଫମାନେ ଉପଯୁକ୍ତ ଭାବରେ ତାଲିମପ୍ରାପ୍ତ ନୁହଁନ୍ତି। ଖଣ୍ଡିଏ ଫାଇଲ ମାଗିଲେ ମିଳିବ ମିଳିବ ବୋଲି ଘଣ୍ଟାଏ। ଆଉ ଥରେ ମାଗିଲେ ସେମିତି ବିଳମ୍ବ। କ୍ୟାଟାଲଗ ନାହିଁ, ଖାତାରେ ଲେଖା ଲିଷ୍ଟ। ମାତ୍ର ଏସବୁ ଅସୁବିଧା ସତ୍ତ୍ୱେ ସାର କହି ଦିଅନ୍ତି କୋଉ ଥାକରେ କୋଉ ଫାଇଲ ଅଛି। ପାଇବାକୁ ସହଜ ହୁଏ। ଡିପାର୍ଟମେଣ୍ଟରେ ଦେଖାହୁଏ ୨ ମାସରେ ଥରେ। ରବିବାର, କେହି ନଥାନ୍ତି ଆମ ଦୁଇଜଣଙ୍କ ଛଡା। ସେତେବେଳକୁ ମୁଁ ଅଡଶପୁରୀ କଲେଜରେ ଜଏନ କରିସାରିଥାଏ। ସାରଙ୍କୁ କହିଲି ମୁଁ ଦୁଇ ବର୍ଷରେ ସାରିବି। ସାର କହିଲେ, ଏତେଶୀଘ୍ର ଅସମ୍ଭବ। ସ୍କଲାରସିପ ବନ୍ଦ। ଅଭାବ, ଅନାଟନ, ଭାଇ ଭଉଣୀମାନଙ୍କର ସମସ୍ୟା, ତଥାପି ଦେଖୁଥାଏ ସାର କିପରି ମୋତେ ଉତ୍ସାହ ଦେଇ ଚାଲିଥାନ୍ତି।

ସାର ମେତେ କହିଲେ କୋଶ୍ଚିନାୟାର ତିଆରି କରି ସ୍ୱାଧୀନତା ସଂଗ୍ରାମୀମାନଙ୍କର ଠିକଣା ସଂଗ୍ରହ କରି ଡାକରେ ପଠାଇବା ପାଇଁ। ୧୦୦ ସରିକି ବିଭିନ୍ନ ସ୍ୱାଧୀନତା ସଂଗ୍ରାମୀଙ୍କ ଠିକଣା ସଂଗ୍ରହ କରି ମୁଁ କୋଶ୍ଚିନାୟାର ଛପାଇ ପଠାଇଲି। ପ୍ରାୟ ୫୦ ସରିକି ପତ୍ର ପୁରଣ ହୋଇ ଆସିଥିଲା। ସଂଗ୍ରାମୀମାନେ ସେମାନଙ୍କ ବିଚାରବୁଦ୍ଧି ଲଗାଇ ମୋର ପ୍ରଶ୍ନ ଗୁଡ଼ିକର ଉତ୍ତର ଲେଖି ପଠାଇଥିଲେ। ସାରଙ୍କ କହିବା ଅନୁସାରେ ୨୦-୩୦ ଜଣ ସଂଗ୍ରାମୀଙ୍କ ଘରକୁ ଯାଇ ଭେଟିଲି। ଏହା ଫଳରେ ସେମାନଙ୍କର ବ୍ୟକ୍ତିଗତ ଜୀବନ ବିଷୟରେ ବହୁ ଧାରଣା ତିଆରି ହୋଇପାରିଲା। ସାରଙ୍କ ଇଂରେଜୀ ଚମତ୍କାର। ଗ୍ରାମାର ସଠିକ୍ ଓ ଅକ୍ଷର ସୁନ୍ଦର।

ସାର କହିଲେ ଗାନ୍ଧୀ ସାହିତ୍ୟସବୁ ପଢିବା ପାଇଁ। ଓଡିଆ ସାହିତ୍ୟରେ ଗାନ୍ଧୀଙ୍କ ଯୁଗକୁ ନେଇ ସବୁ ଉପନ୍ୟାସ, ଜୀବନୀ, ଆତ୍ମଜୀବନୀ, ସାଧାରଣ କର୍ମୀଙ୍କ ବିଷୟରେ ପ୍ରକାଶ ପାଇଥିବା ଛୋଟ ଛୋଟ ସ୍ମରଣିକା ପୁସ୍ତିକା ସବୁ ଖୋଜିଲି। ଉତ୍କଳ ସାହିତ୍ୟ

ସମାଜକୁ ସଂଧ୍ୟାରେ ଦୁଇମାସ କାଳ ଓ ଦାସରଥି ପଟ୍ଟନାୟକଙ୍କ ଉଦୟପୁର ଲାଇବ୍ରେରୀକି ଯାଇ ସେଠି ୨/୩ ଦିନ ରହି ବହୁ ପୁରୁଣା ଖବରକାଗଜରୁ ତଥ୍ୟ ସଂଗ୍ରହ କଲି। ମୋ ରଫ ମାନୁସ୍କ୍ରିପ୍ଟକୁ ଦେଖି ସାର କୁହନ୍ତି, ପ୍ରଶାନ୍ତ ତୁମ ଇଂରେଜୀ ପୁରା ସାମ୍ବାଦିକଙ୍କ ଭାଷାପରି, ଏପରି ଚଳିବନି। ରିସର୍ଚ୍ଚପାଇଁ ଭାଷାର ଶୈଳୀ ଅଲଗା। ତୁମେ ନିଉଜପେପର ପରି ଲେଖନି। ଇତିହାସ ଗବେଷଣା ପାଇଁ ସିଧା ଭାବ ଓ ସିଧା ଶବ୍ଦ ବ୍ୟବହାର କରିବା ଶିଖ।

ଠିକ୍ ଦୁଇବର୍ଷ ଭିତରେ ମୁଁ ମୋ ଥେସିସ୍ ଦାଖଲ କଲି। ହେଲେ ରେଜଲଟ ଆସିବାକୁ ଲାଗିଗଲା ପୁରା ଦୁଇ ବର୍ଷ। ସାର ବ୍ୟସ୍ତ ହୁଅନ୍ତି। ତାଙ୍କୁ ଲାଗେ ଥେସିସ୍‌ର ବିବାଦୀୟ ବିଷୟ ଯୋଗୁଁ ବୋଧେ ତାହା ରିଜେକ୍ଟ ହୋଇଯାଇଛି। ବାଣୀବିହାରର ରିସର୍ଚ୍ଚ ସେଲକୁ ଗଲେ ଉତ୍ତର ମିଳେ ଏକ୍ସଟରନାଲ ପଠେଇ ନାହାଁନ୍ତି। ପୁଣି ସାର ଦମ୍ଭ ଦିଅନ୍ତି, ଯଦି ରିଜେକ୍ଟ ହୋଇଥାନ୍ତା ତ ଥେସିସ ଫେରି ଆସନ୍ତାଣି।

ହଠାତ୍ ଦିନେ ସାର ମୋତେ ଖବର ଦେଲେ ଯେ, ଯେଉଁ ଦୁଇଜଣ ଏକ୍ସଟରନାଲଙ୍କ ପାଖକୁ ଥେସିସ ଯାଇଥିଲା, ସେମାନେ ଖବର ଦେଇଛନ୍ତି ଯେ, ସେମାନେ ୧୫ ମାସ ପୂର୍ବରୁ ଥେସିସକୁ ପଢି 'ଭେରି ଗୁଡ୍' ଲେଖି ପଠାଇ ଦେଇଥିଲେ ବି ସେମାନଙ୍କୁ କାହିଁକି ଡକାଯାଉନି ଭାଇଭା ପାଇଁ। ସାର ଅଫିସକୁ ଗଲେ, ଖୋଳତାଡ ହେଲା, ମିଳିଲା ଥେସିସ, ଦୁଇଜଣ ଏକ୍ସଟରନାଲ ପଠାଇ ଦେଇଛନ୍ତି ବହୁତ ଦିନ ତଳୁ।

ଏଠି ଆମର ଅବସ୍ଥା ଏମିତି। ଅଫିସର ଭୁଲ ଯୋଗୁଁ ନିରୀହ ଲୋକ ଭାସି ଯାଆନ୍ତି। କେହି ଏଥିପାଇଁ ଉତ୍ତରଦାୟୀ ନୁହଁନ୍ତି। କାହାକୁ ଏପରି ଭୁଲପାଇଁ ଦଣ୍ଡ ମିଳେନାହିଁ। ଏହା କଣ, କାହାର ଏ ଭୁଲ ଥିଲା। ଜଣା ପଡିଲା ନାହିଁ। ୧୯୯୨ ମସିହାରେ ଦାଖଲ ହୋଇଥିବା ଥେସିସର ଫାଇନାଲ ରେଜଲଟ ବାହାରିଲା ୧୯୯୪ରେ। ଠିକ୍ ସମୟରେ ରେଜଲଟ ବାହାରିଥିଲେ ମୋର ଜୀବନର ଗତିପଥ ବୋଧେ ଆଉ ପ୍ରକାରେ ହୋଇଥାନ୍ତା। ୨ ବର୍ଷ କାଳ ସାର ଓ ମୁଁ- ବଡ ଟେନ୍‌ସନ୍ ଭୋଗିଲୁ। ଆଉ ସରକାରୀ କି ବେସରକାରୀ କଲେଜପାଇଁ ଅଧ୍ୟାପକ ଚାକିରୀ ବାହାରିଲା ନାହିଁ। ଗ୍ରାଜୁଏସନ ପିଲାଙ୍କୁ ପଢାଇବା ପାଇଁ ଚାକିରୀ ପାଇଥିଲେ ବି ୟୁଜିସି ଦରମା ଅକାଶ କୟାଁ ହେଲା। ଧୂଆ ମୂଳା, ଅଧୂଆ ମୂଳା ସବୁ ସମାନ। ନେଟ ପାଇ, ଏମ୍ ଫିଲ., ପି ଏଚ. ଡି.କରି ସରକାରୀ ଚାକିରୀ ମିଳିଲା ନାହିଁ। ଜୁନିୟର ଅଧ୍ୟାପକ ପୋଷ୍ଟ ପାଇଁ ଆବେଦନ କରିବାକୁ ଲାଜ ଲାଗିଲା। ୨୫ବର୍ଷ ଚାଲିଗଲା। ଅଭିମାନରେ - ଅଭିମାନରେ ଜୀବନ ସରିଗଲା। ଯେଉଁ ସାଙ୍ଗମାନେ ଏମ.ଏ.ପାସ ପରେ କୌଣସି କଲେଜରେ ଜଏନ୍ କରିଗଲେ ୖ;ସମାନେ ୟୁଜିସି ଦରମା ପାଇଲେ। ହେଲେ ଆମେ କିଛି ଜଣ ରହିଗଲୁ ଷ୍ଟେଟସ୍କେଲରେ। ସାର ବହୁତ ବୁଝେଇ କୁହନ୍ତି ମୁଁ ଯେତେବେଳେ ଏସବୁ କଥା କୁହେ ଉଦାସରେ।

ଥରେ ତ ଭାବିଥିଲି, ଝଗଡା କରିବି ଅଫିସରେ, ଯାହାହେବ ଦେଖାଯିବ, ହେଲେ ସାର ବହୁତ ବୁଝେଇଥିଲେ ମୋତେ। ନିମ୍ନ ମଧ୍ୟବିତ୍ତ ପରିବାରର ପିଲା ଆମେ, ନା ମନ୍ତ୍ରୀ, ନା ବିଧାୟକ, ନା ଅଫିସର, ନା ପ୍ରଫେସର, କାହା ସହ ଆମର ଦୂରଦୂର ପର୍ଯ୍ୟନ୍ତ ସମ୍ପର୍କ ନଥାଏ। ଆମପାଇଁ କହିବା ପାଇଁ କେହିନଥାନ୍ତି। ଦୁଇ ବର୍ଷର ଯନ୍ତ୍ରଣା ଆମେ ଦିଜଣ ସହିନେଲୁ। ଦୁଇବର୍ଷ ଭିତରେ କିଛି ସିଲେକସନ ବୋଡ ଚାକିରୀ ପାଇଗଲେ ପି ଏଚ୍.ଡି. କରିଥିବାରୁ।

ମୁଁ ଆଗରୁ ଶୁଣିଥିଲି, ଏବେ ବି ଶୁଣେ, ରିସର୍ଚ୍ଚ କରୁଥିବା ପିଲାମାନଙ୍କୁ ଗାଇଡମାନେ କିପରି ମାଙ୍କଡ-କୁକୁର ପରି ବ୍ୟବହାର କରନ୍ତି। ସେମାନଙ୍କୁ ଘର ଚାକରପରି ଭାବନ୍ତି। ସ୍ୟାଡିଷ୍ଟପରି ନିରୀହ ଗରିବ ପିଲାଙ୍କୁ ଶାରୀରିକ ଓ ମାନସିକ ଭାବେ ଶୋଷଣ କରନ୍ତି ହେଲେ ଡ. ପ୍ରସନ୍ନ କୁମାର ମିଶ୍ର ଏକ ବିରାଟ ବ୍ୟତିକ୍ରମ ଥିଲେ। କୋଉଦିନ ଟାଣ ଶବ୍ଦଟିଏ ମୋତେ ସେ କହିନାହାଁନ୍ତି। ସାରଙ୍କ ଘରକୁ ମୁଁ ଯାଏ ସପ୍ତାହ। ସତ୍ୟଭାମା ମ୍ୟାଡାମ ମୋତେ ଖୁବ୍ ଭଲ ବ୍ୟବହାର କରନ୍ତି। ମ୍ୟାଡାମଙ୍କ

Democratic Movements in india ବହିଟି ମଧ୍ୟ ପ୍ରକାଶିତ ହେଲା। ବହୁତ ଉପାଦେୟ ଗ୍ରନ୍ଥ। ଓଡ଼ିଶା ଇତିହାସର ଗବେଷଣାକୁ ଉପର ସ୍ତରକୁ ଏ ଦମ୍ପତି ନେଇ ଯିବାରେ ସଫଳ ହୋଇଥିଲେ। ଓଡ଼ିଶାରେ ଇତିହାସ କେବଳ ଆଉ ରାଜାରାଜୁଡ଼ା ବା ନେତାଙ୍କ ଇତିହାସର ଗାଥା ହୋଇନଥିଲା। ପ୍ରଜାମଣ୍ଡଳ ଆନ୍ଦୋଳନ ସବୁ ପ୍ରମାଣ କରିଦେଲେ ଯେ, ଇତିହାସ ଆଜି ସେମାନଙ୍କ, ପ୍ରଜାଙ୍କ ସପକ୍ଷରେ।

ସାରଙ୍କ ଟୋନାଲ କ୍ୱାଲିଟି ବଡ ଆମୋଦକର, ଲାଗେ ଯେପରି କୌଣସି ଡ୍ରାମାରେ ରାମଚନ୍ଦ୍ର ପ୍ରଜାମାନଙ୍କୁ ଉଚ୍ଚ କଣ୍ଠରେ ଉଦ୍‌ବୋଧନ କରୁଛନ୍ତି। ୧୯୯୦ ମସିହାରେ ଓଡ଼ିଶାର ଅଗ୍ରଣୀ ବିଶ୍ୱବିଦ୍ୟାଳୟରେ ଇତିହାସରେ ଏପରି ଅଖାଡୁଆ ବିଷୟ ନେଇ ଗବେଷଣା କରି ଡିଗ୍ରୀ ପାଇବା ନିଶ୍ଚୟ ଅସମ୍ଭବ ପରିକଳ୍ପନା ଥିଲା। ବିଭିନ୍ନ ଲୋକଙ୍କୁ ଭେଟି, ସେମାନଙ୍କ ଠାରୁ ଛପା କାଗଜରେ ଉତ୍ତର ଆଦାୟ କରିବା, ଓଡ଼ିଶାର ବିଭିନ୍ନ ଜାଗାରେ ଥିବା ପାଠାଗାରଗୁଡ଼ିକୁ ଯାଇ ତଥ୍ୟ ସଂଗ୍ରହ କରିବା ସବୁ, ଡ. ପ୍ରସନ୍ନ କୁମାର ମିଶ୍ର ମୋତେ ଶିଖାଇ ଥିଲେ। ଅତ୍ୟନ୍ତ ଧୀଶକ୍ତି ସମ୍ପନ୍ନ ଏ ବ୍ୟକ୍ତି ମୋର ରିସର୍ଚ୍ଚ ଗାଇଡ ଥିଲେ, ସେଥିପାଇଁ ମୁଁ ଗର୍ବିତ। ସେତେବେଳେ ମହିୟସୀ କର୍ମୀ ଅନ୍ନପୂର୍ଣ୍ଣା ମହାରଣାଙ୍କର ତାଙ୍କ ସ୍ୱାଧୀନତା ସଂଗ୍ରାମ ସମୟର ଅଭିଜ୍ଞତାକୁ ନେଇ ସୁଚରିତା ପତ୍ରିକାରେ 'କୁସୁମ ପରଶେ ପଟ୍‌ଟ ନିସ୍ତରେ...' ନାମରେ ଧାରାବାହିକ ପ୍ରବନ୍ଧ ବାହାରୁଥିଲା, ସାର ତା ବିଷୟରେ ମୋତେ କହିବାରୁ ୧;ମା ଭଉଣୀ ଯିଏ ଇତିହାସ ବିଭାଗର ଛାତ୍ରୀ ଥିଲା, ସେ ସୁଚରିତା ଅଫିସରୁ ସବୁତକ କପି ସଂଗ୍ରହ କରି ଆଣିଦେଲା। ଏ ରିସର୍ଚ୍ଚ କଲା ଭିତରେ ଏକ ସମ୍ପୂର୍ଣ୍ଣ ନୂଆ ଜଗତ ନୂଆ ଦୃଷ୍ଟିକୋଣକୁ ନେଇ ମୋ ଆଖି ଆଗରେ ଉନ୍ମୋଚିତ ହୋଇ ସାରିଥିଲା।

ସାରଙ୍କ ଆଶୀର୍ବାଦରୁ ମୁଁ ବହୁଥର ଡିପାର୍ଟମେଣ୍ଟର ସେମିନାରକୁ ଯାଇଛି ଓ ପ୍ରବନ୍ଧ ପଢିଛି। ମୋର ବହୁତ ଲେଖା ମଧ୍ୟ ପ୍ରକାଶିତ ହୋଇଛି। ସାର ଗଲାପରେ କେବଳ ଅମଳ ସାରଙ୍କ ଛଡା ଆଉ କେହି ଡାକନ୍ତି ନାହିଁ।

ସମୟ ଗଡି ଯାଉଥାଏ। ସାର ରିଟାୟାର୍ଡ କଲେ। ଆମ କଲେଜରେ ମୁଁ ପାଖାପାଖି ୮ଟି ନ୍ୟାସନାଲ ସେମିନାର କଲି। ସାରଙ୍କୁ କେତେ ଡାକିଛି, ସାର ଜମାରୁ ଆସିଲେ ନାହିଁ। ମନା କଲେ। ବିଭିନ୍ନ ଘଟଣା କଥା ମୁଁ ଶୁଣୁଥାଏ। ସାରଙ୍କ ପରି ମାନସିକ ଶକ୍ତିରେ ଭରା ମଣିଷ ଏପରି ନିରୁତ୍ସାହିତ କାହିଁକି। ତାପରେ ଦେଖାହୋଇଛି। ଘରେ, ବାହାରେ, ଝିଅ ବାହାଘର ସମୟରେ, ଥରେ ଅଡଶପୁରେ-। ସବୁବେଳେ ଲାଗେ, ମୋତେ ଦେଖିଲେ ସାରଙ୍କ ମୁହଁରେ ଖୁସି ଉଚ୍ଛୁଳିପଡେ। ଆତ୍ମା ତୃପ୍ତ ହୋଇଯାଏ।

ହଠାତ୍ ଖବର ମିଳିଲା ସାର୍ ଚାଲିଗଲେ। ବିଶ୍ୱାସ ହେଲାନି। ଏତେ ହଠାତ୍। ଏତେ ପ୍ରାଣୋଚ୍ଛଳ ମଣିଷ କିପରି ସମସ୍ତଙ୍କୁ ହତମ୍ଭ କରି ଚାଲିଗଲେ।

ଆଜି ସାରଙ୍କ ସ୍ମୃତିରେ କିଛି ଲେଖିଲା ବେଳକୁ କେତେକଥା ମନେ ପଡିଯାଉଛି। ସାର ଏମିତି ସାଧାରଣ ମାର୍ଗଦର୍ଶକ ନଥିଲେ। ସାଧାରଣ ଗବେଷକ ନଥିଲେ। ତାଙ୍କ ପାଖରେ ଅସାଧାରଣ ଗଭୀରତା ଥିଲା। ସାର ହୁଏତ ଅନ୍ୟମାନଙ୍କ ପରି ସେସବୁର ଲୋକଦେଖାଣିଆ ବ୍ୟବହାର କରିପାରିଲେ ନାହିଁ। ଲୋକଦେଖାଣିଆ ମିଛୁଆ ଜ୍ଞାନୀମାନେ ସବୁବେଳେ ଏମିତି ନିଜ ଜ୍ଞାନର ବିପଣୀ ଖୋଲି ପ୍ରଚାର ଧର୍ମରେ ବାହାବା ପାଇଥାନ୍ତି। ହେଲେ ସଚ୍ଚା ଜ୍ଞାନୀ ସେସବୁରେ ବିଶ୍ୱାସ କରେନି। ସେ ନିଜର ସାଧୁତା ଆଧାରରେ ନିଜ ଦମ୍‌ରେ ନିଜ ବାଟ ତିଆରି କରେ, ସାର ସେମିତି ଜଣେ ମଣିଷ ଥିଲେ।

ସାର୍, ଆପଣ ମୋ ଜୀବନର ଏକ ଅତି ସଂକଟ କାଳରେ ଉଭା ହୋଇ ମୋତେ ମାର୍ଗ ଦର୍ଶନ କରାଇଥିଲେ। ମୁଁ ଆପଣଙ୍କୁ ବହୁତ ଭଲପାଏ ସାର। ଆପଣ ଯେଉଁଠି ବି ଥାନ୍ତୁ, ଆପଣଙ୍କ ବରଦହସ୍ତ ସଦାସର୍ବଦା ମୋ ପାଇଁ ଖୋଲା ରହିଥାଉ।

ଇତି

ଆପଣଙ୍କ ଆଜ୍ଞାଧୀନ

ପ୍ରଶାନ୍ତ



# ପ୍ରସନ୍ନ ସ୍ମୃତିରେ

*ସୁବାସଚନ୍ଦ୍ର ପଟ୍ଟନାୟକ* (ବାଲ୍ୟବନ୍ଧୁ)

ମୋ ବାପା ଯଦି ଜୀବିତ ଥାଆନ୍ତେ, ପ୍ରସନ୍ନର ତିରୋଧାନ ଖବର ଶୁଣି ସେ ଲୁହ ଲୁଚେଇ ପାରିନଥାନ୍ତେ। ମୋ ପିଲାକାଳର ସାଙ୍ଗ ପ୍ରସନ୍ନ। ଉତ୍କଳ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଇତିହାସ ପ୍ରାଧ୍ୟାପକ ପ୍ରସନ୍ନ କୁମାର ମିଶ୍ର। ସେ ଭଲ ପଢୁଥିଲା ବୋଲି ମୋ ବାପା ତାକୁ ମୋ ଠାରୁ ବି ଅଧିକ ଭଲପାଉଥିଲେ। ଗୋପୀନାଥପୁରରୁ ତିଗିରିଆ ନିଜଗଡକୁ ଯିବାଆସିବାରେ ତାର ସମୟ ନଷ୍ଟ ନହେଉ, ଏଥିପାଇଁ ତାକୁ ଆମ ଘରେ ରଖାଇଥିଲେ ଓ ଆମେ ଦୁହେଁ ଗୋଟିଏ ଖଟରେ ଶୋଉଥିଲୁ, ଗୋଟାଏ ଥାଳୀରେ ଖାଉଥିଲୁ, ଗୋଟିଏ ଲଣ୍ଠନରେ ପଢୁଥିଲୁ, ଏକାଠି ବୁଲୁଥିଲୁ, ଏକାଠି ସ୍କୁଲ୍ ଯାଉଥିଲୁ। କିନ୍ତୁ ଆମ ଭିତରେ ଗୋଟେ ବିରାଟ ଫରକ ଥିଲା। ସେ ସମ୍ପୂର୍ଣ୍ଣ ଶାନ୍ତ ସ୍ୱଭାବର ଥିଲା, ମୁଁ ସମ୍ପୂର୍ଣ୍ଣ ଦୁର୍ବାର ଥିଲି। ପରସ୍ପରର ଏହି ବିପରୀତ ଗୁଣକୁ ଭଲପାଇବାରେ ଆମେ କିନ୍ତୁ କେହି କାହାଠୁ ବି ଊଣାନଥିଲୁ। ପ୍ରସନ୍ନର ତିରୋଧାନ ଖବର ଦେଇ ମୋ ସଙ୍ଗାତ ଓ ଆମ ଉଭୟଙ୍କ ସାଙ୍ଗ ଭଗବାନ ଆଚାର୍ଯ୍ୟ ବାଢିଚାଲିଲା ଆମ ପିଲା ଦିନର ସେହି ସବୁ ଅଦ୍ଭୁତ ସାଦୃଶ୍ୟ ଓ ଅସାଦୃଶ୍ୟର ଅପାଶୋରା ଦୃଶ୍ୟପଟ। କେନ୍ଦ୍ର ସରକାରଙ୍କ ଟେଲିକମ୍ ବିଭାଗରେ ଏକ ଉଚ୍ଚ ପଦରୁ ଅବସର ନେଇଛି ଭଗବାନ, ସେ ବି ଜଣେ ବେଦବିଦ୍ୱାନ ଭାବେ ସୁବିଦିତ। ଆମେ ସବୁ ସାଙ୍ଗଙ୍କ ଭିତରେ ସେ ସଦା ସକ୍ରିୟ ଏକମାତ୍ର ସଂଯୋଗ ସେତୁ। ତାଠୁ ଜାଣିଲି, ପ୍ରସନ୍ନ ସମ୍ପୂର୍ଣ୍ଣ ସୁସ୍ଥଥିଲା, ହଠାତ୍ ଚାଲିଗଲା। ଏହି ଖବର ଦେଇ ସେ ଆମ ପିଲାଦିନକୁ ଏମିତି ବଖାଣିଲା ଯେ ନିଜକୁ ସମ୍ଭାଳିବାକୁ ଏଯାଏଁ ମୁଁ ସକ୍ଷମ ହୋଇନାହିଁ। ଶାରୀରିକ ଅସୁବିଧା ହେତୁ ମୁଁ ତା ଶୋକାକୁଳ ପରିବାରକୁ ସଙ୍କୋଳିବାକୁ ଯାଇପାରିନି। ମୋ ଜନ୍ମମାଟି ତିଗିରିଆ କୋଳରେ ଯେତେ ଭଲ ମଣିଷ ଭୂମିଷ୍ଠ ହୋଇଛନ୍ତି ସେମାନଙ୍କ ମଧ୍ୟରେ ପ୍ରସନ୍ନର ସ୍ଥାନ ଚିର ଦେଦୀପ୍ୟମାନ ଓ ଅନୁକରଣୀୟ ହୋଇରହିବ।



# ବନ୍ଧୁ ପ୍ରସନ୍ନ ମିଶ୍ରଙ୍କ ସ୍ମରଣେ

*ଭଗବାନ ଆଚାର୍ଯ୍ୟ*
ବାଲ୍ୟ ବନ୍ଧୁ

ବନ୍ଧୁ ପତ୍ନୀ ସତ୍ୟଭାମାଙ୍କ ଠାରୁ ଖବର ପାଇଲି ତାଙ୍କୁ ଛାଡି ଚାଲିଗଲେ । ପ୍ରଥମେ ମୁଁ ଭାବିଲି କେଉଁଆଡେ ଯାଇଥିଲେ ସେ ଛାଡି ଚାଲିଗଲେ । ପରେ ବୁଝିଲି ପ୍ରସନ୍ନର ହଠାତ୍ ସ୍ୱର୍ଗବାସ ହୋଇଗଲା । ଆମେ ଦୁଇଜଣ ଏକାବେଳେ ବଡପଣ୍ଡା ମଧ୍ୟ ଇଂରାଜୀ ବିଦ୍ୟାଳୟରେ ୪ର୍ଥ ଶ୍ରେଣୀରେ ପଢ଼ି ମାଇନର ଓ ପବିତ୍ର ମୋହନ ବିଦ୍ୟାପୀଠ ତିଗିରିଆରୁ ମାଟ୍ରିକ୍ ପାଶ୍ କରୁ । ଅର୍ଥାଭାବରୁ କଲେଜରେ ପାଠ ପଢ଼ିପାରିଲୁନି । ପ୍ରସନ୍ନ ଖ୍ରୀଷ୍ଟ କଲେଜରେ ଓ ମୁଁ ରେଭେନ୍ସା ନାଇଟ କଲେଜ୍‌ରେ ପଢି ବିଏ ପାସ୍ କଲୁ । ତା ପରେ ସେ ବାଣୀବିହାରରୁ ଇତିହାସରେ ଏମ୍.ଏ. ପାସ କଲା ମୁଁ ବ୍ରହ୍ମପୁର ଖଲ୍ଲିକୋଟ କଲେଜରୁ ଓ ଅର୍ଥନିତୀରେ ଏମ୍.ଏ. ପାସ୍ କଲି । ସେ ବାଣୀବିହାରରେ ଚାକିରୀ କଲା ଓ ତାର ବିଭାଗରେ ଭୁବନେଶ୍ୱରରେ ମୁଁ ଚାକିରୀ କଲି।

୮-୨-୨ ଦିନ ଆମର ଗୋଟିଏ ମହାମିଳନ ୪ ବନ୍ଧୁ ଓ ବନ୍ଧୁପତ୍ନୀଙ୍କର ହୋଇଥିଲା । ସେଥିରେ ପ୍ରଶନ୍ନ, ସତ୍ୟଭାମା ପତି, ପ୍ରଭାତ ଓ ସୁପ୍ରଭା, ଭାଗିରଥୀ ଓ ଗୀତା ସାହୁ, ଭଗବାନ ଓ ଶାନ୍ତିଲତା ଆଚାର୍ଯ୍ୟ ଚାରିବନ୍ଧୁ  ମୋ ବଡଝିଅ  ସୁଜ୍ଞାନୀ ବିଭାଘରରେ ଏକାଠି ସାଙ୍ଗହୋଇ ମହାଆନନ୍ଦ ପାଇଥିଲୁ।  ତା ପରେ ପ୍ରଶନ୍ନ ସ୍ତ୍ରୀ ମୋତେ କହିଲେ ଇତିହାସ ପଢୁଥିବା ମୋ ବଡ ଝିଅକୁ ସେ ବୋହୂ କରିବାକୁ ଚାହିଁଥିଲେ, କିନ୍ତୁ ତାଙ୍କ ପୁଅ ଅନ୍ୟତ୍ର ବିଭା ହୋଇଗଲା।

ଭୁବନେଶ୍ୱରରେ ଥିବା ବେଳେ ଆମ୍ବ ଓ ପଣସ ୯ନମ୍ବର କ୍ୱାର୍ଟର ଓ ବାଣୀବିହାର କ୍ୱାର୍ଟରରୁ ପ୍ରଶନ୍ନ ପଠାଇଥିବାର ଆନନ୍ଦ ପାଏ। ୩୧.୦୫.୨୦୦୫ ଦିନ ଦୁହେଁ ଏକାଦିନରେ ରିଟାୟାର୍ଡ କରିଥିଲୁ। ତାପରେ ସେ ଭଲରେ ଥିଲା। ସେ ମୋର ଗଣିତ ଓ ମାନସାଙ୍କ ଭଲ ହୁଏ ଓ ଠିକ୍ କରି ଆଗ ଉତ୍ତର ଦେଉଥିଲି। ପରୀକ୍ଷାରେ ଶହେରୁ ଶହେ ରଖେ ଆଜି ତା ପିଲାମାନଙ୍କୁ କହେ ବୋଲି କହେ। ସାଙ୍ଗହୋଇ ୧୯୪୪ରୁ ୨୦୦୫ ପର୍ଯ୍ୟନ୍ତ ଏକାଠି କାଟିବାରେ ଯେଉଁ ଆନନ୍ଦ ମିଳେ ଅବର୍ଣ୍ଣୟ। ପ୍ରଭାତର ଶାନ୍ତି ଯଜ୍ଞରେ ଉଭୟ ରାମମନ୍ଦିର ଉତ୍ସବରେ ଯୋଗଦେଇଥିଲୁ । ବନ୍ଧୁ ସୁବାସ ପଟ୍ଟନାୟକ ସାମ୍ବାଦିକ ଆମର ମିଳନକୁ ମନେ ପକାନ୍ତି।

ଈଶ୍ୱର ପ୍ରସନ୍ନର ଆତ୍ମାକୁ ଶାନ୍ତି ପ୍ରଦାନ କରନ୍ତୁ । ତାର ପତ୍ନୀ ଓ ପୁଅ ଝିଅଙ୍କୁ ଶାନ୍ତିରେ ରଖନ୍ତୁ ଏହା ଈଶ୍ୱରଙ୍କ ଠାରେ ପ୍ରାର୍ଥନା।

**"କେହି ରହି ନାହିଁ ରହିବେ ନାହିଁଟି ଭବରଙ୍ଗ ଭୂମି ତଳେ।**
**ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡିବେ କାଳବଳେ।''**



# ବନ୍ଧୁ ମିଳନ

*ମେନକା ମିଶ୍ର*
କଳିଙ୍ଗନଗର, ଭୁବନେଶ୍ୱର

୨୦୦୪ ମସିହାର ଜାନୁୟାରୀ କେତେ ତାରିଖ ଠିକ୍ ମନେ ନାହିଁ, ସକାଳ ୧୦ କି ୧୧ଟା ବେଳେ ଜଣେ ଭଦ୍ରବ୍ୟକ୍ତି ଓ ଜଣେ ଭଦ୍ର ମହିଳା ଆମ ଘରକୁ ଆସିଲେ। ଭଦ୍ରବ୍ୟକ୍ତି ଜଣଙ୍କର ଚେହେରା ଜଣେ ଜ୍ଞାନି ଲୋକଙ୍କ ଭାବ ପରିସ୍ଫୁଟ ହେଉଥିଲା। ବର୍ଣ୍ଣ ଶ୍ୟାମଳ ଓ ପତଳା ଡେଙ୍ଗା ଚେହେରା ଆଉ ଭଦ୍ର, ମହିଳା ଜଣକ ଦୀର୍ଘାଙ୍ଗୀ ଗୌରବର୍ଣ୍ଣା ଓ ଅତ୍ୟନ୍ତ ସୁନ୍ଦର ମୁହଁରେ ମିଠାହସ। ଆସୁ ଆସୁ ମତେ ନମସ୍କାର ଜଣାଇଲେ। ମୁଁ ପ୍ରତି ନମସ୍କାର କରି ବସିବାକୁ ଆସନ ଯାଚିଲି। ସେମାନେ ବସିବାକୁ ମନା କରି କହିଲେ ଆମକୁ ବହୁତ ଆଡେ ଯିବାକୁ ଅଛି, ଆମେ ଯିବୁ ଭଦ୍ରବ୍ୟକ୍ତି ଟିକେ ଆଗେଇ ଆସି କହିଲେ କ'ଣ ମୋତେ ଚିହ୍ନି ପାରୁନ ? ମୁଁ ପ୍ରସନ୍ନ ଆମେ ଏକା ସାଙ୍ଗରେ ବାଣୀବିହାରରେ ପଢୁଥିଲେ। ୧୯୬୭-୬୮ ମସିହାର କଥା ମୁଁ ଇତିହାସରେ ବାଣୀବିହାରରେ ପଢୁଥିଲି ପ୍ରସନ୍ନ ବି ମୋ ସାଙ୍ଗରେ ପଢୁଥିଲେ। ସେ ମୋତେ ଠିକ୍ ଚିହ୍ନିଲେ ମୁଁ କିନ୍ତୁ ଅପ୍ରତିଭ ହେଲି କାରଣ ମୁଁ ପ୍ରସନ୍ନଙ୍କୁ ଚିହ୍ନି ପାରିଲି ନାହିଁ।

ପ୍ରସନ୍ନ ତାଙ୍କ ତରଫରୁ କହିଲେ ତମ ଘରଠୁ ୩ଟା ଘର ଛାଡି ମୁଁ ଘର କରିଛି। ସରସ୍ୱତୀ ପୂଜାଦିନ ମୋର ଘର ପ୍ରତିଷ୍ଠା ତୁମେ ନିଶ୍ଚୟ ଆସିବ। ତାଙ୍କ ସ୍ତ୍ରୀ ବି ମୋତେ କହିଲେ ନାନୀ ଆପଣ ନିଶ୍ଚୟ ଯିବେ। ତାଙ୍କର ଆନ୍ତରିକତା ରେ ମୁଁ ମୁଗ୍ଧ ହେଲି। ଦୀର୍ଘବର୍ଷ ପରେ ମୋର ପ୍ରସନ୍ନ ସହିତ ଦେଖା। ବାଣୀବିହାରରେ ଆମେ ଇତିହାସ ବିଭାଗରେ ପଢିଲା ବେଳେ ଆମ ବିଭାଗରେ ୬୨ଜଣ ପୁଅ ଓ ୯ଜଣ ଝିଅ ପଢୁଥିଲେ। ପୁଅ ପିଲାମାନଙ୍କ ସହିତ ମୋର କମ୍ କଥାବାର୍ତ୍ତା ଥିଲା, ଆଉ ଝିଅମାନଙ୍କ ସହିତ ଖୁବ୍ ଦୋସ୍ତି ଥିଲା। ମୁଁ ଟିକେ ଚୁପ୍‌ଚାପ ସ୍ୱଭାବର ଝିଅ ଥିବାରୁ ପୁଅ ସାଙ୍ଗମାନଙ୍କ ସହିତ କମ୍ ଆଳାପ ଥିଲା। ଏ ଦୃଷ୍ଟିରୁ ବେଶିପୁଅଙ୍କୁ ଚିହ୍ନି ନଥିଲି। ତେଣୁ ପ୍ରସନ୍ନଙ୍କୁ ନଚିହ୍ନିବା ସ୍ୱାଭାବିକ। କିନ୍ତୁ ମୋ ଘର ଓ ପ୍ରସନ୍ନ ଘର ପାଖାପାଖି ହୋଇଯିବାରୁ ଆମର ଏହି ଉତ୍ତର ଜୀବନରେ ବନ୍ଧୁତ୍ୱ ଅତି ଦୃଢ ହୋଇଗଲା।

ଭୁବନେଶ୍ୱର ଆଇଗିଣିଆ ଗାଁରେ ଥିଲା ଆମ କଲୋନି ଆନି ଏନ୍‌କ୍ଲେଭ୍। ଏହି କଲୋନିରେ ପ୍ରତିମାସରେ ଆମ ସୋସାଇଟିର କମିଟି ମିଟିଂ ହେଉଥିଲା। ଏହି ମିଟିଂ ପାଇଁ ପ୍ରସନ୍ନ ବହୁତ ଆଗ୍ରହ ଦେଖାଉଥିଲେ। ସର୍ବପ୍ରଥମେ ନିର୍ଦ୍ଧାରିତ ସମୟର ୫-୧୦ ମିନିଟ୍ ପୂର୍ବରୁ ମିଟିଂରେ ପହଞ୍ଚି ଯାଉଥିଲେ। ମୋର ଯଦି ମିଟିଂରେ ପହଞ୍ଚିବାର ସାମାନ୍ୟ ବିଳମ୍ବ ହେଉଥିଲା ମତେ କହୁଥିଲେ ମାଡାମ୍ କ'ଣ ଏତେ ଡେରି ? ବୟୋଜ୍ୟେଷ୍ଠ ହିସାବରେ ସେ ସେକ୍ରେଟାରୀ ଏବଂ ପ୍ରେସିଡେଣ୍ଟଙ୍କୁ ବହୁତ ଭଲ ଭଲ ଉପଦେଶ ଦେଉଥିଲେ। ନିର୍ଭିକ ଏବଂ ସ୍ପଷ୍ଟବାଦୀ ଭାବରେ ସେ ଅନେକ ସମୟରେ ପ୍ରଶଂସିତ ଓ ନିନ୍ଦିତ ହେଉଥିଲେ ମଧ୍ୟ।

ପ୍ରସନ୍ନ ଓ ମୋ ଘର ପାଖାପାଖି ଗୋଟିଏ ଧାଡିରେ ଥିବାରୁ ପ୍ରସନ୍ନ ଓ ସତ୍ୟଭାମା (ପ୍ରସନ୍ନର ପତ୍ନୀ) ଆମ ଘରକୁ ପ୍ରାୟ ଆସୁଥିଲେ। ମୁଁ ବି ତାଙ୍କ ଘରକୁ ମୋ ମା'ଙ୍କ ସହିତ ଯାଉଥିଲି। ଆମ ପରିବାରର ଏହି ବନ୍ଧୁତ୍ୱ ଭାବକୁ ମା ବହୁତ ଭଲ ପାଉଥିଲା। ସତ୍ୟଭାମାକୁ, ପ୍ରସନ୍ନଙ୍କୁ ଏବଂ ତାଙ୍କର ଦୁଇ ପୁଅ ଓ ଗୋଟିଏ ଝିଅ ସମସ୍ତଙ୍କୁ ମା' ଭାରି ଭଲ ପାଉଥିଲେ। ଆମ ଦୁଇ

ପରିବାରରେ ବନ୍ଧୁତ୍ୱ ବେଶୀ ବେଶୀ ଦୃଢ ହେବାକୁ ଲାଗିଲା। ସତ୍ୟଭାମା ଓ ପ୍ରସନ୍ନଙ୍କ ସାନ ପୁଅ ଓ ଝିଅର ବାହାଘର ଯଥାକ୍ରମେ ମେ ଫେୟାର ଓ ସ୍ୱସ୍ତି ପ୍ରିମିୟମ୍ ହୋଟେଲ୍‌ରେ ହୋଇଥିଲା। ମୁଁ ତାଙ୍କର ସେହି ବିବାହରେ ଯୋଗ ଦେଇଥିଲି। ଏହିପରି ଭାବରେ ସମସ୍ତ ସାମାଜିକ ଉତ୍ସବରେ ସେମାନେ ଆମ ଘରକୁ ଆମେ ତାଙ୍କ ଘରକୁ ଯାଉଥିଲୁ। ଏହି ପରି ଭାବରେ ଦୁଇ ପରିବାର ଯୋଡି ହୋଇ ରହିଥିଲା। ୧୦ ନମ୍ବର ପ୍ରସନ୍ନ ଘର ଓ ୧୪ ନମ୍ବର ଆମ ଘର। ଦୁଇ ଘର ମଧ୍ୟରେ ଯିବା ଆସିବା ସବୁବେଳେ ଲାଗି ରହିଥିଲା।

ସମୟ ଗଡିଚାଲେ, ୨୦୧୩ ମସିହା ନଭେମ୍ବର ୭ତାରିଖ ମୋ ମା' ଏହି ସାଂସାର ଛାଡି ଚାଲିଗଲେ। ତାଙ୍କର ଏହି ଯିବାରେ ମୁଁ ପୁରାପୁରି ଭାଙ୍ଗି ପଡିଥିଲି, କିନ୍ତୁ ମୋର ଦୁଃଖଦ ସମୟରେ ଆମ କଲୋନିର ସମସ୍ତେ ବିଶେଷତଃ ପ୍ରସନ୍ନ ଓ ସତ୍ୟଭାମା ୧୫ଦିନ ପର୍ଯ୍ୟନ୍ତ ଆମ ଘରକୁ ଆସି ଆମ ପରିବାରକୁ ଓ ମତେ ଶାନ୍ତ୍ୱନା ଜଣାଉଥିଲେ। ମା' କିପରି ଟିଭିରେ ପ୍ରସନ୍ନଙ୍କ କଥା ଶୁଣି ଖୁସି ହୋଇ ତାଙ୍କୁ ପ୍ରଶଂସା କରି କହୁଥିଲା କେତେ ଜ୍ଞାନି, ଗୁଣି ବୋଲି ସେ କଥା କହି ବହୁତ ମନଦୁଃଖ କରୁଥିଲେ। ସତ୍ୟଭାମା ମୋର ସାନ ଭଉଣୀ ପରି ମୋ ପାଖେ ପାଖେ ସବୁ ବେଳେ ରହିଥିଲା। ସେମାନଙ୍କର ସ୍ନେହ ଶାନ୍ତ୍ୱନା ପୂର୍ଣ୍ଣ କଥା ମୋ ମନକୁ ଅଶେଷ ଶାନ୍ତି ଦେଉଥିଲା।

ସମୟର ସ୍ରୋତରେ ବହୁତ କିଛି ପରିବର୍ତ୍ତନ ହୋଇଥାଏ। ପ୍ରସନ୍ନଙ୍କର ହାର୍ଟ ପ୍ରୋବ୍ଲେମ୍ ହୋଇ ଗୋଟିଏ ଛୋଟିଆ ଅସ୍ତ୍ରୋପଚାର ହେଲା। ସତ୍ୟଭାମାର ପୀତନଳୀରେ ପଥର ଓ ମେରୁଦଣ୍ଡରେ ସମସ୍ୟା ଦେଖା ଦେବାରୁ ଅପରେସନ୍ ମଧ୍ୟ ହେଲା। ମୋ ଗୋଡ ଭାଙ୍ଗିବା ଓ ଅପରେସନ୍, ପେଟ ଅପରେସନ୍ ସବୁ ହୋଇଗଲା। ମୋର ଅପରେସନବେଳେ ସତ୍ୟଭାମା ମୋ ପାଖକୁ ହସ୍ପିଟାଲ୍ ଯାଉଥିଲେ। ଧୀରେ ଧୀରେ ସମସ୍ତେ ସୁସ୍ଥ ହେଲେ। ପ୍ରସନ୍ନ ଆଇଗିଣିଆ ଘର ବିକ୍ରି କରି ଭୁବନେଶ୍ୱର ଲୋୟଲା ସ୍କୁଲ ପାଖ ଓମ୍ ଗାର୍ଡେନ୍‌କୁ ଚାଲିଗଲେ। ମୁଁ ବି ମୋର ଘର ବିକ୍ରି କରି ଭୁବନେଶ୍ୱର ଘାଟିକିଆ ଗାଁ ପାଖ କଳିଙ୍ଗନଗର ଚାଲି ଆସିଲି। ଘର ଦୂର ହୋଇଯିବାରୁ ଆମର ଯିବା ଆସିବା କମିଗଲା। ମୋର ବି ଦେହ ବିଶେଷ ଭଲ ରହୁ ନଥିବାରୁ କୁଆଡେ ଯିବା ଆସିବା କରିପାରୁନଥିଲି। ସତ୍ୟଭାମା କିନ୍ତୁ ଝିଅ ମାମାକୁ ଓ ନାତି ଗୁଣ୍ଟୁକୁ ସାଙ୍ଗରେ ଧରି ଆମ ଘରକୁ ଆସୁଥିଲେ। ସାଙ୍ଗରେ ପିଠା, ଦ୍ୱିତୀୟା ଓଷା ଘାଣ୍ଟ ତରକାରୀ ଧରି ଆଇଗିଣିଆ ଆନି ଏନକ୍ଲେଭ୍‌ରେ ଥିବା ବେଳେ ଆମ ଘରକୁ ପ୍ରାୟ ସ୍ୱାଦିଷ୍ଟ ପିଠା ଓ ପ୍ରତିବର୍ଷ ଘାଣ୍ଟ ତରକାରୀ ନେଇ ଆସୁଥିଲେ। ଆମ ଘର ଖୋଜି ସତ୍ୟଭାମା ଯେତେବେଳେ ଆମ ଘରେ ଆସି ପହଞ୍ଚୁଥିଲେ ଆମ ଘରେ ସମସ୍ତେ ଖୁସି ହେଉଥିଲୁ। କେତେ ସମୟ କଥାବାର୍ତ୍ତା ଓ ହସ ଖୁସିରେ କଟି ଯାଉଥିଲା । ପ୍ରସନ୍ନ ଖବର ମୁଁ ସତ୍ୟଭାମା ଠାରୁ ଶୁଣୁଥିଲି। ସେ ଓ ମୁଁ ପ୍ରାୟ ଟେଲିଫୋନ୍‌ରେ କଥାବାର୍ତ୍ତା କରୁଥିଲୁ। ସତ୍ୟଭାମା ଜରିଆରେ ଆମେ ଦୁଇ ବନ୍ଧୁ ପରସ୍ପରର ଭଲମନ୍ଦ ଜାଣୁଥିଲୁ।

୨୦୨୨ ମସିହା ଜୁନ୍ ମାସର କେତେ ତାରିଖ ମୋର ଠିକ୍ ମନେ ନାହିଁ। ମୁଁ ସକାଳୁ ଉଠୁ ଉଠୁ ସତ୍ୟଭାମାର ଫୋନ୍ ଆସିଲା ନାନୀ ଆପଣଙ୍କ ବନ୍ଧୁ ବାଥରୁମ୍‌ରେ ପଡିଯାଇ ମୁଣ୍ଡ ମାଡ ହୋଇଛି । ବ୍ରେନ୍ ହାମ୍‌ରେଜ୍ ହେବାରୁ ଅପରେସନ୍ ହେଲା। ବର୍ତ୍ତମାନ କୋମାରେ ଅଛନ୍ତି। ଏହା ଶୁଣି ମନଟା ଭାରି ବ୍ୟସ୍ତ ହେଲା। ଦେଖିବାକୁ ଯିବାପାଇଁ କହିବାରୁ ସତ୍ୟଭାମାଠୁ ଶୁଣିଲି ଆଇସିୟୁରେ ଅଛନ୍ତି। କାହାରିକୁ ଭିତରକୁ ଛାଡୁ ନାହାନ୍ତି। ତେଣୁ ଦେଖିବାର ଇଚ୍ଛା ତ୍ୟାଗ କରି ରହିଲି। ଏହାର ଦୁଇତିନିଦିନ ପରେ ସତ୍ୟଭାମା କରୁଣ କଣ୍ଠରେ ଫୋନ୍ କଲା ନାନୀ ଆପଣଙ୍କର ବନ୍ଧୁ ଆଉ ନାହାନ୍ତି। ମୋର ସର୍ବାଙ୍ଗରେ ଏକ ତଡିତ, ପ୍ରଭାବ

ଖେଳିଗଲା ପ୍ରସନ୍ନକୁ ଆଉ ଦେଖିପାରିଲି ନାହିଁ। ଦୀର୍ଘବର୍ଷର ବନ୍ଧୁତ୍ୱର ଡୋରି ଛିଣ୍ଡିଗଲା। ପ୍ରସନ୍ନର ସୁଗୁଣ କଣ ବର୍ଣ୍ଣନା କରିବି। ସେ ବନ୍ଧୁ ବତ୍ସଳ, ଜ୍ଞାନିଗୁଣି, ସ୍ୱାଭିମାନୀ, ସାଧୁ, ସଚ୍ଚୋଟ ଓ ପରିଶ୍ରମୀ ଏକାଧାରରେ ଅନେକ ଗୁଡିଏ ଗୁଣର ସମାହାର। ଯେପରି ବ୍ୟକ୍ତିତ୍ୱ ସେପରି ମୃତ୍ୟୁ। ନିଜର ପତ୍ନୀ ସନ୍ତାନମାନଙ୍କ ଗହଣରେ ଆଖିବୁଜି ଦେଲେ। ବେଶି କଷ୍ଟ ପାଇ ନାହାନ୍ତି କାହାରିକୁ ସେବା କରିବାର ସୁଯୋଗ ନ ଦେଇ ଚାଲିଗଲେ।

"ପ୍ରାଣୀର ଭଲମନ୍ଦ ବାଣୀ<br>
ମରଣ କାଳେ ତାହା ଜାଣି"

ଉପରୋକ୍ତ ଉକ୍ତିଟିକୁ ସତ୍ୟ ପ୍ରତିପାଦିତ କରି ପ୍ରସନ୍ନ ପରିବାର, ବନ୍ଧୁବାନ୍ଧବ ସମସ୍ତଙ୍କୁ ଛାଡି ଚାଲିଗଲେ। ଆଉ ଦେଖା ହବ ନାହିଁ କିନ୍ତୁ ତାଙ୍କର ସ୍ମୃତି ସର୍ବଦା ମନକୁ ଆନ୍ଦୋଳିତ କରିବ। ପ୍ରସନ୍ନ ତୁମେ ଆମମାନଙ୍କୁ ଛାଡି କରି ଯିବାର ଏକ ବର୍ଷ ହୋଇଗଲା। ସତ୍ୟଭାମା ଓ ପିଲାମାନେ ତୁମକୁ ଝୁରୁଛନ୍ତି। ମୁଁ ବି ତୁମ ପରି ବନ୍ଧୁଟିଏ ଆଉ ପାଇବି ନାହିଁ। ବିଶ୍ୱନିୟନ୍ତାଙ୍କୁ ପ୍ରାର୍ଥନା କରୁଛି ତୁମକୁ ପରପାରିରେ ବି ସୁଖରେ ରଖନ୍ତୁ।



# ପ୍ରସନ୍ନ ଭାଇନା

*ଡକ୍ଟର ଇନ୍ଦ୍ରମଣୀ ଜେନା*



ପ୍ରଥମ ଦେଖାରୁ ସିଏ ପ୍ରସନ୍ନ ଭାଇନା, କାହିଁକି ନା ମୋ ପତ୍ନୀ ବିଜୟିନୀଙ୍କର ହଷ୍ଟେଲ୍ ରୁମ୍‌ମେଟ୍ ସତ୍ୟଭାମା ଅପା କେତେ ଆଗରୁ ୧୯୭୪-୭୫ ବେଳଠାରୁ, ଆମର ତ ଦେଖା ଆହୁରି ଦଶବର୍ଷ ପରେ। ଅଳ୍ପକଥା, ମୁହଁର ହସରେ ତାଙ୍କର ଅନେକ ଭାବ ଓ ଭାତୃସୁଲଭ ବ୍ୟବହାର ଥରେ ସାକ୍ଷାତରେ ନିଜର କରିନେବ। ଆହୁରି ବି ଘନିଷ୍ଠ ହେବାର ଆଉ ଗୋଟିଏ ପରିଚୟ ଥିଲା। ମୋ ମେଡିକାଲ ଏମ୍.ବି.ବି.ଏସ୍. ସମୟର ରୁମ୍‌ମେଟ୍ ଡଃ ଶ୍ରୀବତ୍ସ ମିଶ୍ର ତାଙ୍କର ବଂଶର ଏବଂ ତାଙ୍କ ପୁତୁରା। ଏବେ ରମାଦେବୀରେ ଉଭୟ ସତ୍ୟଭାମା ଅପା ଆଉ ବିଜୟିନୀ ଅଧ୍ୟାପନା କାର୍ଯ୍ୟରେ ନିୟୋଜିତ, ଅନେକ ବର୍ଷର ଗହଣି। ତା ଭିତରେ ଭାଇନାଙ୍କ ସହ ଅନେକ ଦେଖା ହୁଏ। ହସ ହସ ମୁର୍ହରେ କମ୍ କଥା କହିଲେ ବି ବେଶି ବୋଲି ବୋଧହୁଏ ଏବଂ ସେ ଅନେକ ସମୟରେ ଆମ ପିଲାଙ୍କ କଥା ବୁଝନ୍ତି।

ଦିନେ ଜାଣିଲେ ଆମ ଗାଁ ଆଉ ଘର କଥା। ଶୁଣିଲେ ଆମର ଘରଟି ମିହ୍ନା ଡିହ। ବିଶେଷ କିଛି ସୂଚନା ନଦେଇ କହିଲେ, ମୁଁ ଆପଣଙ୍କୁ ଗୋଟିଏ ଉପହାର ଦେବି। ମୁଁ ଆଶ୍ଚର୍ଯ୍ୟ ହୋଇଥିଲି ତାଙ୍କ କଥା ଶୁଣି। ସେ ତାଙ୍କର ପ୍ରକାଶିତ ଗୋଟିଏ ପୁସ୍ତକ ଉପହାର ଦେଲେ ଏବଂ ଏହା କଲିକତାର ପୁନ୍ଥି ପୁସ୍ତକ ପ୍ରକାଶନ ଦ୍ୱାରା ପ୍ରକାଶିତ। ତାଙ୍କର ଖୋର୍ଦ୍ଧାର ପାଇକ ଏବଂ ପାଇକ ଆନ୍ଦୋଳନ ଉପରେ ଗବେଷଣା ଥିଲା। ସେଇଟା ତାଙ୍କର ପି.ଏଚ୍.ଡି. ଡିଗ୍ରୀ ଥେସିସ୍ ବା ଗବେଷଣାର ବିଷୟବସ୍ତୁ ଥିଲା। ସେଇ ବିଷୟରେ ହିଁ ସେ ତାଙ୍କର ପି.ଏଚ୍.ଡି. ଡିଗ୍ରୀ ଲାଭ କରିଥିଲେ। ମୋତେ ତାଙ୍କର ବହିଟି ପ୍ରଦାନ କରି ସେ ଅପାର ଆନନ୍ଦ ଅନୁଭବ କରୁଥିଲେ, କାରଣ ମୁଁ ନିଜେ ତାଙ୍କର ପରୀକ୍ଷଣର ଜଣେ ବ୍ୟକ୍ତି ନହେଲେ ବି ମୋ ଜାତି ଏବଂ ସ୍ଥାନ ଉପରେ ସେ ଅନେକ ତଥ୍ୟ ହାସଲ କରିଛନ୍ତି। ଜୀବନରେ ଖୋର୍ଦ୍ଧାର ପାଇକ ଆନ୍ଦୋଳନ କିମ୍ବା ଓଡିଆ ସାମରିକତା ବିଷୟରେ ସଭା ସମିତି ହେଲେ, ତାଙ୍କ ମଞ୍ଚାସନ କରାଯାଏ। ଏତେ ଗୁଡିଏ ତଥ୍ୟ ତାଙ୍କ ପାଖରେ ରହିଛି ଏବଂ ଏତେ ଉଦାହରଣ ସିଏ ଜାଣନ୍ତି, ତାଙ୍କ ବିନା ଖୋର୍ଦ୍ଧା ପାଇକ ଜାତି ଏବଂ ଓଡିଆ ସାମରିକତା ବିଷୟ ରିକ୍ତ ଅନୁଭବ ହୁଏ।

ସେ ନିଜେ ମୋର ଧର୍ମପତ୍ନୀ ବିଜୟିନୀଙ୍କୁ ନିଜ ସାନ ଭଉଣୀ ପରି ମନେକରନ୍ତି। କାରଣ ବିଜୟିନୀ ସତ୍ୟଭାମା ଅପାଙ୍କ ରୁମ୍‌ମେଟ୍ ଥିଲା। ସେ ବିଜୟିନୀଙ୍କୁ ଜାଣିଥିଲେ, ମୋତେ ତା ପରେ ଜାଣିଲେ। ସବୁବେଳେ ହସ ହସ ମୁହଁ, ବହୁତ ମନରେ କହିବାକୁ ଥିଲେ କି ଅଳପ କହନ୍ତି, ଏମିତିକି ଗୋଟି, ଶବ୍ଦ ବା ପଦରେ କଥାଟା ସାରିଦେବେ। ବିଜୟିନୀ ଅକାଳରେ ମାତ୍ର ୫୫ ବର୍ଷ ବୟସରେ ଇହଧାମରୁ ବିଦାୟନେଲା। ବହୁତ ଦୁଃଖକଲେ, ମୋତେ ଯେଉଁ ଠାରେ ଦେଖନ୍ତି, ବିଜୟିନୀ ବିଷୟ ବୁଝନ୍ତି। ସିଏ ବି ବିଜୟିନୀଙ୍କୁ ବହୁବାର ସ୍ୱପ୍ନ ଦେଖି କଅଣ ଘଟିଛି ସେହି କଥା ମୋତେ ବଖାଣନ୍ତି। ଅନେକ ଥର ତାଙ୍କଠାରୁ ମୁଁ ଏ ବିଷୟ ଶୁଣିଛି। ଏଇଟା ତାଙ୍କ ଆମ ଭିତରେ ସମ୍ପର୍କ।

ସେ ଜଣେ ପ୍ରତିଷ୍ଠିତ ଐତିହାସିକ, ପୁରାତନ ଇତିହାସ ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟ। ମୋର ପାଠଟା ଭେଷଜ ବିଜ୍ଞାନ ବା ଆଧୁନିକ ମେଡିକାଲ୍ ସାଇନ୍ସ ହେଲେବି, କୌଣସି ଗଳ୍ପଟିଏ ବା କାହାଣୀଟିଏ କହିବାକୁ କି ଲେଖିବାକୁ ହେଲେ, ମୁଁ ଇତିହାସକୁ ପୃଷ୍ଠଭୂମି ଭାବରେ ନେଇ ନିଜର ଭାବ ବ୍ୟକ୍ତ କରେ। ଏଥିପାଇଁ ପ୍ରସନ୍ନ ଭାଇନାଙ୍କୁ ମୋତେ ପ୍ରଥମେ ପରାମର୍ଶ

କରିବାକୁ ହୁଏ। ଥରେ ତାଙ୍କୁ କହିଲି, ଖାରବେଳଙ୍କ ବିଷୟରେ କେତୋଟି ଧାରାବାହିକ କାହାଣୀ ବ୍ରହ୍ମପୁରରୁ ପ୍ରକାଶିତ ଅନୁପମ ଭାରତ ଖବରକାଗଜର ରବିବାର ସଂଖ୍ୟା ଅନୁପମ ରବିବାରରେ ପ୍ରକାଶ କରିବାକୁ ମୋର ଆଗ୍ରହ ଥାଏ। ତାଙ୍କୁ ବା ନଜଣାଇ ମୁଁ କିପରି ଦୁଃସାହସ କରିବି ? ସେ ଏହା ଶୁଣି ମୋତେ ଆଶ୍ୱାସନା ଦେଇ କହିଲେ, ମୋତେ ବିଷୟବସ୍ତୁ ପଠାଇଦେବେ, କିଛି ଅସଙ୍ଗତି ପାଇଲେ ମୁଁ ସଂଶୋଧନ କରିଦେବି। ତଥ୍ୟ ପରିବେଶିତ ମୋ କାହାଣୀ ଗୁଡ଼ିକୁ ସେ ବହୁତ ପସନ୍ଦ କରୁଥିଲେ। ଏମିତିକି ତାଙ୍କ ଇତିହାସ ବିଭାଗରେ ଅନେକ ବିଶ୍ୱାସ କରୁ ନଥିଲେ କି ଖବରକାଗଜର ସଂପୂର୍ଣ୍ଣ ଗୋଟିଏ ପୃଷ୍ଠା ବା ଗୋଟିଏ ପୃଷ୍ଠାର ତିନି-ଚତୁର୍ଥାଂଶ ପ୍ରତି ରବିବାର କ୍ରମାଗତ ୪୩ଟି ଅଧ୍ୟାୟ ଅସମ୍ଭବ ବିଷୟ। ଏହା ପ୍ରସନ୍ନ ଭାଇନାଙ୍କ ପରାମର୍ଶରେ ସମ୍ଭବ ହୋଇଥିଲା। ଏହି ବିଷୟଟି ନିଶାର୍ଦ୍ଧ "ଶାଳଭଞ୍ଜିକା" ନାମକ ଐତିହାସିକ ଉପନ୍ୟାସ ଭାବରେ ପ୍ରକାଶିତ ହୋଇ ବହୁ ଲୋକପ୍ରିୟ ହୋଇଛି, ମାତ୍ର ପୁସ୍ତକର ଲୋକାର୍ପଣ ଦିବସରେ ସିଏ ଥିଲେ ଏହି କହିଟିର ଐତିହାସିକ ସମୀକ୍ଷକ ଏବଂ ନିଜର ଦୃଢ ମତ ଦେଇଥିଲେ। ତାଙ୍କର ଗଭୀର ଐତିହାସିକ ଜ୍ଞାନ ଏବଂ ଖାରବେଳଙ୍କ ପରିଚୟ ଭୁବନେଶ୍ୱର ଏଜି ସ୍କୋୟାରସ୍ଥିତ ଗୀତଗୋବିନ୍ଦ ସଦନରେ ବହୁ ଅନୁସନ୍ଧିତ୍ସୁ ଦର୍ଶକଙ୍କର ତୃଷା ମେଣ୍ଟାଉଥିଲା।

ଏହି ପୁସ୍ତକଟି ଇଂରାଜୀରେ ଅନୁବାଦ ହୋଇ 'ଶାଲ୍ଭଭଞ୍ଜିକା' ଭାବରେ ବ୍ଲାକ୍ ଇଗଲ୍ ବୁକ୍ସ, ଡବ୍ଲିନ୍, ଆମେରିକା ଦ୍ୱାରା ପ୍ରକାଶିତ ହୋଇ ଡିସେମ୍ବର ୨୦୨୨ ରେ ଲୋକାର୍ପିତ ହେଲା। ଆମର ଦୁର୍ଭାଗ୍ୟ, ପ୍ରସନ୍ନ ଭାଇନା ଆମ ପାଖରେ ନଥିଲେ, ଛଅ ମାସ ଆଗରୁ ଆମମାନଙ୍କୁ ଛାଡି ଇହଧାମ ତ୍ୟାଗ କରି ସାରିଥିଲେ। ମାତ୍ର ଉଭୟ ନିଶାର୍ଦ୍ଧ ଶାଳଭଞ୍ଜିକା ଏବଂ ଇଂରାଜୀ ଶାଳଇଞ୍ଜିକା ତାଙ୍କର ଅଯାଚିତ ଶୁଭେଚ୍ଛା ପରିପ୍ରକାଶ କରେ।

ଖାରବେଳଙ୍କ କଳିଙ୍ଗ କାହାଣୀ ରଚନା ମୂଳରେ ପ୍ରସନ୍ନ ଭାଇନା ଓରଫ ପ୍ରଫେସର ପ୍ରସନ୍ନ କୁମାର ମିଶ୍ରଙ୍କର ପ୍ରଚ୍ଛନ୍ନ ଭୂମିକା ନିମନ୍ତେ ତାଙ୍କୁ ମୋର ଦ୍ୱିତୀୟ ଓଡିଆ ସାମରିକ ବ୍ୟକ୍ତିତ୍ୱ ଗଜପତି କପିଳେନ୍ଦ୍ରଙ୍କ ବିଷୟରେ ଐତିହାସିକ ଉପନ୍ୟାସ ଆରମ୍ଭରୁ ମୁଁ ପାଠ କରୁଥିବା ବିଷୟ ଗୁଡିକ ତାଲିକା କରି ତାଙ୍କୁ ଦେଖାଇଥିଲି। ସିଏ ମୋତେ ଆହୁରି କେତେଗୁଡିଏ ପୁସ୍ତକରୁ ସହାୟକ ଭାବରେ ନେବାକୁ ନିହାତି ଅବଶ୍ୟକ ବୋଲି ପରାମର୍ଶ ଦେଲେ। ଏମିତିକି କହିଥିଲେ, 'ଗଜପତି ରାଜାଙ୍କ କାହାଣୀ ଲେଖିବାକୁ ହେଲେ, ପ୍ରଭାତ କୁମାର ମୁଖାର୍ଜୀଙ୍କର ୧୯୮୧ରେ ପ୍ରକାଶିତ "ହିଷ୍ଟୋୟାରି ଅଫ ଗଜପତି କିଙ୍ଗ୍‌ସ ଅଫ୍ ଓଡିଶା ସମ୍ପୂର୍ଣ୍ଣ ଭାବରେ ପାଠ କରିବା ଦରକାର।"

ସତରେ ଏହା ମୋତେ ଅନେକ ତଥ୍ୟ ପ୍ରଦାନ କରିଲା। ଏହି ପୁସ୍ତକଟି ଅଳ୍ପ କେଇଦିନ ହେବ ଦିଗ୍‌ବିଜୟୀ ଗଜପତି ନାମରେ ଓଡିଆରେ ବ୍ଲାକ୍ ଇଗଲ୍ ବୁକ୍ସ, ଡବ୍ଲିନ, ଆମେରିକା ଦ୍ୱାରା ପ୍ରକାଶିତ ହୋଇ ଆନ୍ତର୍ଜାତିକ ପୁସ୍ତକ ଭାବରେ ଉପଲବ୍ଧ ହେଲା। ମାତ୍ର ପ୍ରତିଟି ପାଦରେ ମୁଁ ପ୍ରସନ୍ନ ଭାଇନାଙ୍କ ଉପଦେଶ ଏବଂ ମୋ କାହାଣୀ ଗୁଡିକ ଉପରେ ରହିଥିବା ଦୃଢ ବିଶ୍ୱାସ ନେଇ ଐତିହାସିକ ଗଳ୍ପଟିଏ ରଚନା କରିବାକୁ ଆଗଭର ହୁଏ।

କୌଣସି ଜୀବନ ତ ଦୁନିଆକୁ ଥରେ ଆସି ଚିରବିଦାୟ ନେଇ ପାରେନି, ସିଏ ରହିଛନ୍ତି ଏବଂ ତାଙ୍କ ଆତ୍ମୀୟ ସ୍ୱଜନ ଏବଂ ପରିଚିତଙ୍କ ପାଖରେ ନିଜର ଉପସ୍ଥିତି ନିଶ୍ଚୟ ଅନୁଭବ କରାଇବେ। ଏବେ ସତ୍ୟଭାମା ଅପା ଏବଂ ପିଲାମାନେ ତାଙ୍କ ଅନୁପସ୍ଥିତିରେ ଅସହାୟ ମନେକରିବା ସ୍ୱାଭାବିକ। କିନ୍ତୁ ସମୟ ସମସ୍ତଙ୍କୁ ଗୋଟି ଗୋଟି କରି ପୋଛି ନେଉଛି ଓ ନେବ, କେହି ଏହି ଚିରନ୍ତନ ପ୍ରଥାରୁ ବିଚ୍ୟୁତ ହେବେନାହିଁ। କିନ୍ତୁ ମଣିଷ ଶାରୀରିକ ଭାବରେ ବଞ୍ଚି ରହିବାର ଅଦ୍ୟମ ଇଚ୍ଛାକୁ ପ୍ରକୃତି ପ୍ରତିହତ କଲେ ବି ମଣିଷର ଅମର ଆତ୍ମା ମରଣଶୀଳ ନୁହେଁ। ପ୍ରସନ୍ନ ଭାଇନା ଆମ ମାନଙ୍କ ସ୍ମୃତିରେ ଚିରକାଳ ପାଇଁ ତିଷ୍ଠି ରହିଛନ୍ତି। ଆମପ୍ରତି ଶୁଭ ଦୃଷ୍ଟି ଦେଉଛନ୍ତି।

ସମାରୋହ, ୧୨୮, ଡୁମୁଡୁମା (କ), ଖଣ୍ଡଗିରି, ଭୁବନେଶ୍ୱର-୩୦
ମୋ:୯୪୩୮୦୦୭୫୦୯



# ସ୍ମୃତିର ରାସ୍ତାରେ ଅଫେରା ବନ୍ଧୁ-ପ୍ରସନ୍ନ ବାବୁ

*ଡଃ. ସଦାଶିବ ମହାପାତ୍ର*

ପ୍ରସନ୍ନ ବାବୁ ଆମ ସମସ୍ତଙ୍କଠାରୁ ବିଦାୟ ନେଇଯିବାର ବର୍ଷଟିଏ ବିତିଗଲାଣି । ବେଳେବେଳେ ବିଶ୍ୱାସ ହେଉନି ଯେ ଏତେ ଭଲମଣିଷ ଜଣେ ନୀରବରେ ସଂସାରରୁ ବାହୁଡିଗଲେ କେମିତି । ବେଶି ମିଶି ପାରୁନଥିବା ଲୋକଟିଏ ହେଲେ ବି ଯାହା ସାଙ୍ଗେ ମିଶନ୍ତି ଅତି ଆନ୍ତରୀକ ହୋଇପଡନ୍ତି । ଆମେ ତାଙ୍କ ଘରେ ପହଞ୍ଚିଗଲେ ତାଙ୍କ ମନଖୋଲା ହସ ଓ ମୁକ୍ତଆଳାପରେ ମୁଗ୍ଧ ହୋଇଯାଉ । ଅଳ୍ପକଥା କହୁଥିବା ଲୋକ, କିନ୍ତୁ ଶୁଣିବା ପାଇଁ ଭାରି ବ୍ୟଗ୍ର । ମୁଁ ବସିପଡିଲେ ଥଟ୍ଟା ମଜ୍ଜା କଥା ସାଙ୍ଗକୁ ବିଭିନ୍ନ ପ୍ରସଙ୍ଗ ଉପରେ ମତାମତ ଶୁଣିବା ପାଇଁ ଚାହିଁ ରହିଥାନ୍ତି ଓ ଉଚ୍ଚ ସ୍ୱରରେ ପତ୍ନୀକୁ ଡାକି ଦିଅନ୍ତି ଆସ ଶୁଣିବ ବୋଲି । ବେଳେବେଳେ ଗପୁ, ଗପୁ ସମୟ ବି ଜାଣିହୁଏନି । ଆସିବା ପାଇଁ ଉଠି ପଡିଲେ ଆଗ୍ରହରେ କହିଦିଅନ୍ତି ଆଉ ଟିକିଏ ବସ୍, ଯିବ ତ ....ଇତ୍ୟାଦି ।

ସେ ତାଙ୍କ ବ୍ୟକ୍ତବ୍ୟ ଭିତରେ କାହା ବିରୁଦ୍ଧରେ ଗପିବାକୁ ଭଲ ପାଆନ୍ତିନି । ଜଣେ ବିଦ୍ୟାନୁରାଗୀ ମଣିଷ । ପାଠ ଚର୍ଚ୍ଚାବେଳେ ମନଧ୍ୟାନ ଦେଇ ଶୁଣିବା ସଙ୍ଗେ ସଙ୍ଗେ ସ୍ୱଷ୍ଟ ମତାମତ ବି ଦେଇଥାନ୍ତି । ଶାନ୍ତି ସ୍ୱଭାବରେ ଅନ୍ତର୍ମୁଖୀ ମଣିଷ ଜଣେ । ପତ୍ନୀ ଓ ସନ୍ତାନମାନଙ୍କ ପାଇଁ ଯେତିକି ଯତ୍ନଶୀଳ, ଭାଇଭଉଣୀ ତଥା ବନ୍ଧୁବାନ୍ଧବ ମାନଙ୍କ ପାଇଁ ମଧ୍ୟ ସେତିକି କର୍ତ୍ତବ୍ୟ ପରାୟଣ । ଘର ଆଠଗଡ଼ ପାଖ ଡିଗିରିଆ ଶାସନରେ । ଆଠଗଡ଼ର ବିଶ୍ୱନାଥ ବିଦ୍ୟାପୀଠରୁ ସେ ମାଟ୍ରିକ୍ ପାଶ କରିଥିଲେ । ମୋ ଶ୍ୱଶୁରଙ୍କ ଘର ଆଠଗଡ଼ ଓ ସେ ତାଙ୍କ ବନ୍ଧୁବାନ୍ଧବ ହୋଇଥିବାରୁ ଥଟ୍ଟା ପରିହାସ ଓ ଆତ୍ମୀୟତାରେ ଆମ ପରିଚୟ । ତାଙ୍କ ଧର୍ମପତ୍ନୀ ସତ୍ୟଭାମା ମଧ୍ୟ ମୋ ସ୍ତ୍ରୀଙ୍କୁ ବଡ଼ଭଉଣୀର ସମ୍ମାନଦେଇ ବହୁତ ଭଲ ପାଆନ୍ତି । ଦୁହେଁ ଗୋଟିଏ କଲେଜରେ ଚାକିରୀ ଆରମ୍ଭ କରିଥିବାରୁ ଅଧିକ ଆତ୍ମୀୟତାରେ ବାନ୍ଧିହୋଇ ଯାଇଛନ୍ତି । ତେଣୁ ଆମେ ଏକ ପାରିବାରିକ ସମ୍ପର୍କରେ ବନ୍ଧା ।

ପ୍ରସନ୍ନବାବୁଙ୍କର ସବୁଠାରୁ ଭଲଗୁଣ ହେଉଛି ସେ ବଡ଼ ପରୋପକାରୀ ଓ ନିଃସ୍ୱାର୍ଥପର । ଚାକିରୀ ଜୀବନଠାରୁ ନିଜର ସାମାଜିକ ଓ ପାରିବାରିକ ଜୀବନ ପର୍ଯ୍ୟନ୍ତ ସବୁ ତ୍ୟାଗ ଓ ଆଦର୍ଶରେ ଗଢା । ସବୁ ସମୟରେ ତାଙ୍କର ନିରାଡ଼ମ୍ବର ଜୀବନଶୈଳୀ ଓ କର୍ତ୍ତବ୍ୟନିଷ୍ଠାର ଝଲକ ବାରିହୋଇପଡ଼େ । ମୋ ସାଙ୍ଗେ କଥା ହେଲା ବେଳେ ଆମ ପୁରୀ କଥା, ପୁରୀବୋଲି ବାଣୀ ଓ ସଂସ୍କୃତିସଂଲଗ୍ନ ଚାଲିଚଳଣ ଆଦି ଶୁଣିବାକୁ ବହୁତ ଆଗ୍ରହ ପ୍ରକାଶ କରିଥାନ୍ତି । ଜଣେ ଗବେଷକ ଭାବରେ ସବୁ ବିଷୟରେ ତର୍ଜମା କରିବାକୁ ବୋଧେ ଭଲ ପାଆନ୍ତି ।

ତାଙ୍କ ଆବର୍ତ୍ତମାନରେ ଭାଙ୍ଗିପଡିଥିବା ସତ୍ୟଭାମାଙ୍କୁ ଓ ପିଲାମାନଙ୍କୁ ଦେଖି ଆସିବାକୁ ଯାଇ ଶୂନ୍ୟ ଘରେ ତାଙ୍କ ଅନୁପସ୍ଥିତିକୁ ମର୍ମେ ମର୍ମେ ଅନୁଭବ କରି ଫେରିଛୁ । ଆପଣାର ମଣିଷ ଜଣେ ଛାଡି ଚାଲିଗଲେ ଅନ୍ତର ଭିତରେ ଯେଉଁ ଦୁଃଖକୁ ଅନୁଭବ କରି ହୁଏ ତାହା ସାରା ଜୀବନ ରହିବା ସଙ୍ଗେ ସଙ୍ଗେ ସମୟର ଅଫେରା ରାସ୍ତାରେ ତାଙ୍କର ସ୍ମୃତି ଅମଳୀନ ରହିଥିବ । ଆଜି ତାଙ୍କର ବାର୍ଷିକ ସ୍ମୃତି ଦିବସରେ ତାଙ୍କ ସୁଗୁଣାବଳୀ ମନେପକାଇବା ସଙ୍ଗେ ସଙ୍ଗେ ତାଙ୍କ ପବିତ୍ର ଆତ୍ମାକୁ ଭଗବାନ ଶାନ୍ତିରେ ରଖନ୍ତୁ ଏହାହିଁ ପ୍ରାର୍ଥନା ।



# ଭିନ୍ନ ଏକ ଐତିହାସିକ ଡ: ପ୍ରସନ୍ନ କୁମାର ମିଶ୍ର

ଡ: ଅମିୟ କୁମାର ମହାନ୍ତି
ଅବସରପ୍ରାପ୍ତ ଇତିହାସ ପ୍ରାଧ୍ୟାପକ

ଡ: ପ୍ରସନ୍ନ କୁମାର ମିଶ୍ର କେବଳ ଆମ ମାନଙ୍କର ଜନୈକ ସମ୍ମାନସ୍ପଦ ଶିକ୍ଷକ ନ ଥିଲେ ସେ ଥିଲେ ଆମ ସମସ୍ତଙ୍କର ପଥପ୍ରଦଶକ। ତାଙ୍କର ମୃତ୍ୟୁ ଆମ ସମସ୍ତଙ୍କୁ ଅକଥନୀୟ ଶୋକ ସାଗରରେ ଭସାଇ ଦେଇଥିଲା। ସଂପର୍କ ଦିନେ ଅଧେର ନୁହେଁ। ଦୀର୍ଘ ୪୦ ବର୍ଷର। ବାଣୀବିହାରର ଇତିହାସ ବିଭାଗରେ ପ୍ରବେଶ ଦିନଠାରୁ ଆଜି ପର୍ଯ୍ୟନ୍ତ ସାର୍ ଆମ ସମସ୍ତଙ୍କ ଆଦରଣୀୟ। ସଂପର୍କର ବନ୍ଧନ ଅତି ସୁଦୃଢ ହୋଇଥିଲା, ଯେତେବେଳେ ସେ ଆମର ସହପାଠିନୀ ସତ୍ୟଭାମା ସହିତ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲେ। ସେହିଦିନ ଠାରୁ ବାଣୀବିହାର ସେ ଆମର କେହି ଭଲ-ମନ୍ଦ ବୁଝିବା ପାଇଁ ଜଣେ ଅଭିଭାବକ ଅଛନ୍ତି ବୋଲି ଗ୍ରହଣ କରିନେଇଥିଲୁ ଆଉ କିଛିଦିନ ପରେ ତାଙ୍କର ଅଫେରା ରାଇଜକୁ ଚାଲିଯିବା ଏକ ବର୍ଷ ପୁରିଯିବ। ଆମେ କିନ୍ତୁ ତାଙ୍କ ମୃତ୍ୟୁକୁ ଏବେ ବି ଗ୍ରହଣ କରିପାରୁନାହୁଁ ବା ବିଶ୍ୱାସ ମଧ୍ୟ କରିପାରୁ ନାହୁଁ।

ପ୍ରସନ୍ନ ସାର ଥିଲେ ଏକ ଭିନ୍ନ ଧରଣର ମଣିଷ ଏବଂ ଐତିହାସିକ। ୨୬ ଫେବୃୟାରୀ ୧୯୪୩ରେ ଜନ୍ମ ଏବଂ ୨୭ ଜୁନ୍ ୨୦୨୨ ରେ ମୃତ୍ୟୁ। ସଂଘର୍ଷରେ ଜୀବନ ଆରମ୍ଭ, ସଂଘର୍ଷରେ ବ୍ୟକ୍ତିତ୍ୱ ବିକଶିତ ଏକ ସଂଘର୍ଷ ଭିତରେ ସେ ଚାଲିଗଲେ। ତାଙ୍କର ମହାନ ବ୍ୟକ୍ତିତ୍ୱ ଏବଂ ଐତିହାସିକ ହିସାବରେ କାର୍ଯ୍ୟବଳୀର ମୂଲ୍ୟାୟନ କରିବା ମୋ ପକ୍ଷେ କଷ୍ଟସାଧ୍ୟ। ଭାବପ୍ରବଣତା ଏବଂ ଯୁକ୍ତିଯୁକ୍ତତା ଭିତରେ ଦ୍ୱନ୍ଦ ବି ଆସିଯାଉଛି। ଦେଖିଲେ ଜାଣିହେବ ନାହିଁ ସେ ଏକ ମହାନ ବ୍ୟକ୍ତିତ୍ୱର ଅଧିକାରୀ। ନିଜକୁ ପ୍ରଦର୍ଶନ କରିବା ବା ଆତ୍ମବଡିମା ପ୍ରଦର୍ଶନ କରିବା ଆମେ ତାଙ୍କ ପାଖରେ କେବେ ଦେଖିନାହୁଁ। ସରଳ ଭଳି ଜଣା ପଡନ୍ତି। ଆତ୍ମ ପତ୍ୟୟ, ନିର୍ଭୀକ, ଦୃଢମନା ଏବଂ ନିଜର ଚିନ୍ତାଧାରା ତଥା ଆଭିମୁଖ୍ୟରେ ଜୀବନ ବ୍ୟାପି ସାଲିସ କରିନାହାନ୍ତି। ତାଙ୍କର ମାନବୀୟ ଆଭିମୁଖ୍ୟ ଆମ ସମସ୍ତଙ୍କୁ ପ୍ରଭାବିତ କରିଥିଲା। ସତ କଥା କହିବାରେ ସେ କେବେ ପଛେଇ ଯାଇନାହାନ୍ତି। ଯଦି ସେଥିପାଇଁ ତାଙ୍କୁ ଅନେକ ମୂଲ୍ୟ ଦବାକୁ ପଡିଛି। ବାଣିବିହାର ଇତିହାସ ବିଭାଗ ରେ ଚୁପଚାପ କାମ କରି ବିଭାଗ କୁ ବୌଦ୍ଧିକ ଦୃଷ୍ଟି କୋଣରୁ ଅଭିବୃଦ୍ଧି କରିବାରେ ତାଙ୍କ ଭୂମିକା ଅନବିଦ୍ୟ ଥିଲା।

ସେ ଆମକୁ ପାଠ ପଢାଇଛନ୍ତି। ଗବେଷକ ହିସାବରେ ତାଙ୍କର ନିଷ୍ଠା ମଧ୍ୟ ଆମେ ଦେଖିଛୁ। ଗୁଣାତ୍ମକ କୃତିରେ ସେ ଇତିହାସର ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି। ଇତିହାସ ରଚନା ତାଙ୍କ ପାଇଁ ଆଇ ମା କାହାଣୀ ନ ଥିଲା। ତଥ୍ୟ ଭିତ୍ତିରେ କୌଣସି ଆଦର୍ଶରେ ପ୍ରଭାବିତ ନ ହୋଇ ସେ ଜନଗଣ ଇତିହାସ ରଚନା ପ୍ରତି ନିଜକୁ ସମର୍ପି ଦେଇଥିଲେ। ତାଙ୍କର ରଚିତ "Political unrest in Orissa in 19th century" "Last days of the Oriya militia" A kingdom for sale" ଯୁଗ୍ମ ଲେଖକ ଭାବେ History of Governor House of Orissa ଏବଂ ୧୬୦ ରୁ ଉର୍ଦ୍ଧ୍ୱ ଗବେଷଣାତ୍ମକ ପ୍ରବନ୍ଧ ରଚନା କରି କାହାର ଦୟା ବା ଅନୁକମ୍ପାରେ ନୁହେଁ ବରଂ ନିଜର ବୌଦ୍ଧିକ ଜ୍ଞାନ ତଥା ସତ୍ୟନିଷ୍ଠତାରେ ସେ ଇତିହାସର ପୃଷ୍ଠାରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି। ଶେଷ ସମୟରେ ତାଙ୍କର ଇଂରାଜୀ ପୁସ୍ତକ "Political unrest in Orissa in the 19th century" ଉନବିଂଶ ଶତାବ୍ଦିର ଓଡ଼ିଶାରେ ଗଣବିଦ୍ରୋହ ଅନୁବାଦ ନିସାନ ପ୍ରକାଶନ ତରଫରୁ ପ୍ରକାଶ ପାଇଛି। ସେହି ପୁସ୍ତକର ଉପସ୍ଥାପନାରେ ସେ ଲେଖିଛନ୍ତି। ବିଂଶ ଶତାବ୍ଦୀରେ ସେ ଜାତୀୟତାବୋଧର ଅଭ୍ୟୁଦୟ ଓ ବିକାଶଧାରା କୁ ବୁଝିବାକୁ ହେଲେ ଉନବିଂଶ ଶତାବ୍ଦୀରେ ହୋଇଥିବା ବିଭିନ୍ନ ବିଦ୍ରୋହକୁ ତା'ର ବିସ୍ତୃତ ଓ ବ୍ୟାପକ ଐତିହାସିକ ସଂଦର୍ଭରେ

ଅଧ୍ୟୟନ କରାଯିବ ନିତାନ୍ତ ଆବଶ୍ୟକ। ବିଭିନ୍ନ ଅଞ୍ଚଳର ଏକ ଅଣ ଅଧ୍ୟୟନ ବିନା ବର୍ତ୍ତମାନ ସମୟ ରେ ସେ ସମସ୍ୟା ଗୁଡିକର ଗଭୀରତା କୁ ପ୍ରବେଶ କରିବା ସମ୍ଭବ ହେବ ନାହିଁ।" ସେ ବାସ୍ତବରେ ଥିଲେ ଜଣେ ସତ୍ୟନିଷ୍ଠ ଇତିହାସର ଗବେଷକ। ତାଙ୍କର ସାମଗ୍ରିକ ଐତିହାସିକ ଅବଦାନରେ ଭାବପ୍ରବଣତା, ରୋମାଂଚ ବା ଅତିରଂଜନତା ପରିଦୃଶ୍ୟ ହୁଏ ନାହିଁ। ସେ ଦୃଷ୍ଟିରୁ ଡ: ମିଶ୍ର ଥିଲେ ଜଣେ ଭିନ୍ନ ଆଦର୍ଶର ଇତିହାସକାର, ଅଧୁନା ଇତିହାସ ଗବେଷଣା, ପାଠ୍ୟକ୍ରମ, ଇତିହାସର ମୂଳସଜ୍ଞା। ସଂକଟ ଭିତରେ ଗତି କରୁଥିବା କେବଳ ଡ: ପ୍ରସନ୍ନ କୁମାର ମିଶ୍ରଙ୍କ ଇତିହାସ ରଚନା ଏକ ଗବେଷଣାର ଆଦର୍ଶ ଏଥିରୁ ନିସ୍ତାର ନେଇ ଇତିହାସ ପାଠକୁ ବିଶ୍ବାସନୀୟ କରିବାରେ ଯେ ସମର୍ଥ ନହେବ ଏଥିରେ ସନ୍ଦେହ ନାହିଁ।

ସ୍ବର୍ଗରେ ରହି ସାର୍ ଆମ ସମସ୍ତଙ୍କୁ ଆଶିର୍ବାଦ କରନ୍ତୁ ଏବଂ ତାଙ୍କ ଦୀର୍ଘ ଚିନ୍ତାଧାରାକୁ ଆଗେଇ ନେବା ଦିଗରେ ପ୍ରେରଣା ଦିଅନ୍ତୁ। ଏହା ସମସ୍ତଙ୍କ ଆଶା ଓ କାମନା।



# AS I KNOW SIR DR. P.K.MISHRA



***Binodini Das,***
Dolamundai, Cuttack

When I first met Sir Dr. P.K. Mishra in 1975 in the Post Graduate Department of History, Vani Vihar, in the Utkal University, I found him amicable, quiet, calm, composed and reasoned personality. He was one of the teaching staffs of our department. When I met him in the department I was used to greet him with utmost reverence with folded hands whispering slowly "Namaskar Sir" and he received it with ' Pratinamaskar'. I was introvert to some extent and in my college days I just opened myself to Satya as I had taken for granted that "**I am only her best friend and no one else**". I was extremely possessive on her. After Six months, I heard that my best friend Satya was going to marry him shortly. I was really thrilled, but at the same time I got perturbed why did Satya opted to marry before completion of the P.G. course. After interrogation, I came to know that due to the insistence of Mausi (Satry's Mother) she got agreed with a condition that there would be no discontinuance in her studies. Then I started policing the nature and attitude of Prasanna Sir whether he was parochial, arrogant or self-centric personality or not. Contradicting all my misconceptions, Sir appeared as a man of virtue, broad minded and noble character. However marriage was solemnised and Satya started to live in his quarter.Prasanna Sir looked upon me as his younger sister and affectionately called me 'Bini". He was really a man of kindhearted, sympathetic and compassionate character.

Sometimes, I accompanied Satya to her quarter and gulped the sumptuous lunch with her and after return, I told Sir that I had been to his house and emptied his treasure little bit. Sir told me fondly that you were most welcome to my house to empty my treasure. One thing unique with him that he was very helpful. Whenever I requested him to help me with some special books which were not found in the library, Sir did it unhesitantly. The joy and happiness of Sir knew no bounds after the birth of Raja in Feb. 1977. In this year Satya could not appear P.G. finale examination. After completion of PG, I enrolled myself in M.Phil and Ph.D.courses.During this period I also visited their house. In between Satya completed her PG and enrolled in Ph.D. due to cooperation of Sir. What Satya told me was that except cooking Sir managed all other household affairs for which she remained mentally free. Sir never interfered in her college matters and she was granted freedom to tackle all the problems arising in her service matter. Sir was of course a noble soul and his sudden demise on 27th June, 2022 shocked everyone. In this first Sraddha day, I pray Sri Jagannath to liberate his soul to get *mukti* and *moksha*. With deep respect and Sradhanjali to the Great Departed Soul.



# IMMORTALITY

***Dr. Soma Chand***

All of us Know
We shall meet the some fate
Some Where among stars clouds and wind
A longly empulse of delight
No dominion no limit
with message on the sky
Death ! you have come
Not to bother
Not to mourn
The vacant nest
silent sarrounding
Whispering throughout
your noble deeds all around
Too long for those who grieve
To shot for those who rejoice
For us who love
you are the dazzling eternity
Research volumes on
19th century in Political Unrest
'Kingdom' for sale
Last Days of Odia Militia
And numerous articles on Odisha History
are kept with long vigil
Table, file, paper and pen
are waiting long
department library Archives
Are eager impatient
Turn again to life and smile
complete deer unfinished
tasks of thive
It is not death
Seemingly endless sleep
The soul at last set free
If humpered not by time or space
We donot weep at death
It is immortality
In Haven of God



# ଭିନ୍ନ ଏକ ମଣିଷ - ପ୍ରସନ୍ନ ଭାଇ

*ଶ୍ରୀମତୀ ସରୋଜିନୀ ପଟ୍ଟନାୟକ*

୧୯୮୭ ମସିହା ମେ ମାସ ୨୯ ତାରିଖ ଦିନ M.Phil course କରିବା ପାଇଁ UGC ଦ୍ୱାରା ପ୍ରଦତ୍ତ ଏକବର୍ଷର ଛୁଟି ସମାପ୍ତ ହେବାପରେ ରମାଦେବୀ ମହିଳା ମହାବିଦ୍ୟାଳୟରେ ଯୋଗଦାନ କରିଥିଲି। ସେହିଠାରେ ହିଁ S.B.W College ରେ ଅଧ୍ୟୟନ କରିବା ସମୟରେ ଦୁଇ ଘନିଷ୍ଠ ବାନ୍ଧବୀଙ୍କ ସହ ସାକ୍ଷାତ ହୋଇଥିଲା। ଜଣେ ସତ୍ୟଭାମାପତି ଏବଂ ଅନ୍ୟଜଣେ ବିଜୟିନୀ ମହାନ୍ତି ଉଭୟେ ମୋର ସହପାଠୀ ନଥିଲେ। ଜଣେ ଉପର ଶ୍ରେଣୀରେ ଏବଂ ଅନ୍ୟଜଣେ ମୋର ତଳ ଶ୍ରେଣୀରେ ପଢୁଥିଲେ। କିନ୍ତୁ ଆମେ ସମସ୍ତେ ହଷ୍ଟେଲରେ ରହୁଥିଲୁ। ୧୯୭୨ ମସିହା ବେଳର ଶୈଳବାଳାର ସେହି ଏକମାତ୍ର ମହିଳା ଛାତ୍ରୀନିବାସ (ଯାହା ଆଜି old hostel ନାମରେ ପରିଚିତ) ସତରେ ଗୋଟିଏ ପରିବାର ସଦୃଶ ଥିଲା। ପରିଣାମ ସ୍ୱରୂପ ଏହି ଦୁଇଜଣ ମୋର ଅତି ଅନ୍ତରଙ୍ଗ ଦୁଇ ଭଉଣୀ ଥିଲେ - ଜଣେ ବଡ ଭଉଣୀ (ସତ୍ୟଭାମା ଅପା) ଏବଂ ଆଉଜଣେ ଅତି ଆଦରର ସାନ ଭଉଣୀ ବିଜୟିନୀ ଯିଏ ଅତି ଅବେଳରେ ୨୦୧୩ ସେପ୍ଟେମ୍ବର ୧୬ ତାରିଖରୁ ଆମ୍ଭମାନଙ୍କୁ ଛାଡି ଅନ୍ୟ ଦୁନିଆଁକୁ ଚାଲିଗଲାଣି।

ସତ୍ୟଭାମା ଅପାଙ୍କର ସ୍ୱାମୀ ପ୍ରସନ୍ନ ମିଶ୍ର। ବାଣୀବିହାରରେ ଇତିହାସ ବିଭାଗରେ ଅଧ୍ୟାପକ ଭାବେ କାର୍ଯ୍ୟ କରୁଥିଲେ। ତାଙ୍କ ଧର୍ମପତ୍ନୀଙ୍କୁ ନେବାପାଇଁ ମହାବିଦ୍ୟାଳୟ ଛୁଟିସମୟରେ ଆସନ୍ତି ଏବଂ ସେହି କ୍ରମରେ ମୋର ତାଙ୍କ ସହ ପରିଚୟ।

ସେତେବେଳେ M.Phil ର dissertation ପ୍ରସ୍ତୁତ କରିବା କାମରେ ମତେ ବାରମ୍ବାର ବାଣୀବିହାର ଯିବାର ଆବଶ୍ୟକତା ପଡୁଥାଏ। ମୋର morning shift college ହୋଇଥିବାରୁ ପ୍ରାୟ ୧୧.୩୦ ମିନିଟ୍ ବେଳକୁ କଲେଜ କାମ ସରିଯାଏ ଏବଂ ମୁଁ ଘରକୁ ନଫେରି ବାଣୀବିହାର ଚାଲିଯାଏ। ଏହି ସମୟରେ ଅନେକଥର ବାଣୀବିହାର ସ୍ଥିତ ପ୍ରସନ୍ନ ଭାଇଙ୍କର ସରକାରୀ ବାସଭବନକୁ ଦ୍ୱିପ୍ରହର ଖାଦ୍ୟ ଗ୍ରହଣ ପାଇଁ ଯାଇଛି। ସେ ମଧ୍ୟ lunch ପାଇଁ ଘରକୁ ଆସିଥାନ୍ତି ଏବଂ ସେହି କ୍ରମରେ ଆମକୁ କିଛି କଥାବାର୍ତ୍ତା ହେବାର ସୁଯୋଗ ମିଳିଥାଏ।

ଦୁଇଟି ମଣିଷଙ୍କ ଭିତରେ ସମ୍ପର୍କଟିଏ ନିବିଡ଼ ହେବାପାଇଁ ଦିନ, ମାସ, ବର୍ଷର ଆବଶ୍ୟକତା ନଥାଏ। ବାସ୍ତବରେ ଆମର ସୀମିତ ଦୃଷ୍ଟି ଯାହାକୁ ଦେଖିପାରେନି ସେଭଳି ଏକ ଅଦୃଶ୍ୟ ଅସରନ୍ତି ସରଳରେଖା (interminable line) ଜନ୍ମପରେ ଜନ୍ମ ଆମକୁ ବାନ୍ଧି ରଖିଥାଏ। ସେହିଭଳି ଏକ ବନ୍ଧନଟିଏ ନିଶ୍ଚିତ ଥିଲା ପ୍ରସନ୍ନ ମିଶ୍ର ଓ ତାଙ୍କ ସ୍ମୃତିରେ ଦୁଇଧାଡ଼ି ଲେଖୁଥିବା ଏହି ମଣିଷଟି ଭିତରେ ଯାହା ତାଙ୍କୁ ଜଣେ ସାଙ୍ଗଙ୍କ ସ୍ୱାମୀରୁ ଏକ ଆତ୍ମୀୟ ବଡ଼ଭାଇରେ ପରିଣତ କରିଦେଲା। କହିବା ବାହୁଲ୍ୟ ସେହି ଆତ୍ମୀୟତା ତାଙ୍କ ଅବର୍ତ୍ତମାନରେ ସାମାନ୍ୟ ବି ଊଣା ହୋଇଯାଇନି।

କେତେ ସୁନ୍ଦର ବୁଝିଥିଲେ ସେ ମତେ। "ସରୋଜିନୀ ଖୋର୍ଦ୍ଧା ପାଇକ" ଏହା ଥିଲା ତାଙ୍କର ଶ୍ରଦ୍ଧାର ସ୍ୱୀକାରୋକ୍ତି। ବିଶେଷ ଭାବେ ଦୀର୍ଘସମୟର ମିଳାମିଶା ନଥାଇ କେଉଁ ଅର୍ନ୍ତଦୃଷ୍ଟି ତାଙ୍କର ମତେ ଏତେ ସୁନ୍ଦର ବିଶ୍ଳେଷଣଟିଏ ଦେଇ ପାରିଥିଲା!! କି ସାହାସ ଦେଖିଥିଲେ ସେ ମୋ' ଭିତରେ!!!

ତାଙ୍କର ଏକ ବିଶେଷ ଶ୍ରଦ୍ଧା ମୋ' ପାଇଁ ଥିଲା, ତାହାହେଲା ମୁଁ ଯେତେବେଳେ ତାଙ୍କ ଘରେ ଖାଏ ସେ ବହୁତ ଖୁସି ହେଉଥିଲେ। ମୁଁ ଖାଉଥିବା ବେଳେ ପାଖକୁ ଆସି ଟିକେ ଖୁସିରେ ଚାହିଁବେ ଏବଂ ସ୍ତ୍ରୀଙ୍କୁ ତାଙ୍କର କହିବେ "ସରୋଜିନୀକୁ ଆଉ ଟିକେ ବେସନ ତରକାରୀ ଦିଅ, ମିଠାଦିଅ" ଇତ୍ୟାଦି।

ସେ ଇହଲୀଳା ସମ୍ବରଣ କରିବାର ୬ମାସ ପର ଘଟଣା । ଦିନେ ସତ୍ୟଭାମା ଅପା (ଯାହାଙ୍କୁ ମୁଁ ଶ୍ରଦ୍ଧାରେ ଭାଉଜ ବୋଲି ସମ୍ବୋଧନ କରେ) ମତେ phone କଲେ। ପ୍ରଥମରୁ ମତେ ପଚାରିଲେ "ସରୋଜିନୀ, ସତ କୁହ; ତୁମେ ଠିକ୍‌ରେ ଖାଦ୍ୟ ଖାଉଚ଼ ନାଁ ନାହିଁ ?" ମୁଁ ସଂପୂର୍ଣ୍ଣ ଇତଃସ୍ତତ ହୋଇଗଲି ଏଭଳି ଏକ ପ୍ରଶ୍ନରେ। ଏଭଳି କାହିଁକି ଆଜି ପଚାରୁଛନ୍ତି ? କହିଲି; ହଁ ସେମିତି ଚାଲିଛି। କିନ୍ତୁ ଏଭଳି କାହିଁକି ଆଜି ପଚାରୁଛ ?" ତାଙ୍କ ଉତ୍ତର ଯାହାଥିଲା ତାହା ହୁଏ ତ ତର୍କବୁଦ୍ଧି ମନକୁ ସର୍ବସ୍ୱ କରି ବଞ୍ଚୁଥିବା ମଣିଷମାନଙ୍କ ପାଇଁ ବିଶ୍ୱାସଯୋଗ୍ୟ ଆଦୌ ହେବନାହିଁ କିନ୍ତୁ ସୀମିତ ମନର କୋଳାହଳକୁ ଟିକିଏ ନୀରବ କରି ମନର ଆବଦ୍ଧ ସୀମା ଭିତରୁ ବାହାରି ଆସି ମନକୁ ବିଶ୍ରାମିତ କରିପାରିଲେ ହୁଏତ ସେହିକଥା କୁ ବିଶ୍ୱାସ କରି ହେବ। ଭାଉଜ କହିଲେ, "କାଲି ରାତ୍ରୀରେ ଏକ ସ୍ୱପ୍ନ ଦେଖି ତୁମକୁ ଏଭଳି ପ୍ରଶ୍ନ ପଚାରୁଛି । ସରୋଜିନୀ ତୁମ ପ୍ରସନ୍ନ ଭାଇ ସ୍ୱପ୍ନରେ ଆସି ମତେ କହିଲେ। ସରୋଜିନୀ କିଛି ଠିକ୍‌ରେ ଖାଉନି, ତା' କଥା ବୁଝୁନ କାହିଁକି ? ଯାଅ – ତା'କୁ ଖାଇବାକୁ ଦିଅ।" "ମୁଁ ସେହି ସ୍ୱପ୍ନରେ ହିଁ ତୁମକୁ ଖୁବ୍ ବେଶି ଧଳା ଦେଖାଯାଉଥିବା ଭାତ, ଆଉ କ'ଣ ତରକାରୀ ଆଦି ଦେଉଛି।" ଏତିକି ଶୁଣିଲା ପରେ ମୋ' ଆଖିରେ ଲୁହ ଜକେଇ ଆସିବାକୁ ଆଦୌ ବିଳମ୍ବ ହେଲାନାହିଁ। କାରଣ ତାହା ଥିଲା ତୃତୀୟ ଦିନ ମୁଁ ଭାତ ଖାଇନଥିଲି। ସେତେବେଳେ ସମୟ ଦିନ ୧ଘଣ୍ଟା ହୋଇ ସାରିଥିଲା ଏବଂ ମୁଁ କିଛି ରୋଷେଇ କରିବାକୁ ଆରମ୍ଭ କରୁଥିଲି। ପୂର୍ବ କିଛିଦିନ ଦେହ ଠିକ୍ ନଥିଲା ଏବଂ ସତରେ ମୁଁ ବିଶେଷ କିଛି ଖାଦ୍ୟ ଖାଇ ନଥିଲି।

ମନର ସୀମାରେ ନିଜକୁ ଆବଦ୍ଧ ରଖିଲେ କିଭଳି ବୁଝିବା ଆମେ ଏହି ସତ୍ୟକୁ ? ଶରୀରରେ ନଥିବା ପ୍ରସନ୍ନ ଭାଇ କେଉଁ ଚ଼କ୍ଷୁରେ ଦେଖିପାରିଥିଲେ ମୋର ଅସୁସ୍ଥତା ଏବଂ ମୋର ଠିକ୍‌ରେ ଖାଦ୍ୟ ନ ଖାଇବା ଘଟଣାକୁ ?

ଯେଉଁ ଅମର ଚ଼େତନା, ଅସୀମ ଚ଼େତନା ମଣିଷର ଶରୀର ଭିତରେ ନିଜକୁ ସୀମାୟିତ କରି ରଖିଥାନ୍ତି। ଶରୀରର ପତନରେ ସେହି ଶାଶ୍ୱତ ସତ୍ତା ବିଶ୍ୱଚ଼େତନାରେ ଏକୀଭୂତ ହୋଇଯାନ୍ତି ଏବଂ ପରିଣାମତଃ ସର୍ବଦ୍ରଷ୍ଟା ଏବଂ ସର୍ବଶକ୍ତିମାନ ହୋଇଯାନ୍ତି। ସେହି ବିଶ୍ୱଦୃଷ୍ଟି ତାଙ୍କର ବିଶ୍ୱର ଯେ କୌଣସି ପ୍ରାଣୀର ସୁଖ, ଦୁଃଖ କାହିଁକି ବା ପ୍ରତ୍ୟୟ ନ କରିବ ? ସେହି ସର୍ବଶକ୍ତିମାନ ମୁକ୍ତ ଚେତନା କାହିଁକି ବା ପରିବାରର ସମସ୍ତ ଅମଙ୍ଗଳକୁ ମଙ୍ଗଳରେ ପରିଣତ ନକରିବ ? ?

ଶ୍ରୀ ଅରବିନ୍ଦଙ୍କର ମନ୍ତ୍ରମୟୀ ମହାକାବ୍ୟ ସାବିତ୍ରୀର ୪ଧାଡି ଏଠାରେ ପ୍ରାସଙ୍ଗିକ ମନେହୁଏ।

A miracle of the absolute was born,
Infinity put on a finite soul,
All ocean livied within a wandering drop,
A time_made body housed the illimitabla.
To live this Mystery out our souls came here...

*Sri Aurobindo*
*Savitri, Book 2,*
*Canto 1, p101*



# ସତ୍ୟ ପ୍ରସନ୍ନ ସାର୍ ଓ ମୁଁ

*ଡକ୍ଟର ଗୀତା ଦାସଅଧିକାରୀ,* ଓଇଏସ

ଆଜିକୁ ଅନେକ ଦିନ ତଳର କଥା ୧୯୭୪ ମସିହାରେ ବି.ଏ. ପାସ୍ କଲା ପରେ ଇତିହାସରେ ପି.ଜି. କରିବାକୁ ମୋତେ ବାରିପଦାରୁ ବାଣୀବିହାରକୁ ଯିବାକୁ ପଡିଲା। ସେତେବେଳେ ଉତ୍ତର ଓଡ଼ିଶାରେ ପିଜି କରିବାର କୌଣସି ସୁବିଧା ନଥିଲା। ବାଣୀବିହାର ଯାଇ ହଷ୍ଟେଲ୍‌ରେ ରହି ମୁଁ ପାଠ ପଢିଲି। ପ୍ରାଚୀନ ଭାରତ ଇତିହାସ ସ୍ପେଶିଆଲ୍ ପେପର ରଖି ମୁଁ ଇତିହାସରେ ପିଜି କଲି। ସେଇଠି ଦେଖା ହେଲା ମୋର ସତ୍ୟଭାମା ସାଙ୍ଗରେ। ସେ ମଧ୍ୟ ଏକା ସ୍ପେଶିଆଲ୍ ପେପର ରଖି ପଢୁଥାଏ। ଅଳ୍ପସଂଖ୍ୟକ ଛାତ୍ରଛାତ୍ରୀଙ୍କୁ ନେଇ ଆମ ସ୍ପେଶିଆଲ୍ ପେପର କ୍ଲାସ। ମାତ୍ର ଇତିହାସ ବିଭାଗର ଜେନେରାଲ୍ କ୍ଲାସ୍‌ରେ ଦେଢଶହ ପିଲା। ଗ୍ୟାଲେରୀ ପୂରା ଭର୍ତ୍ତି। ଅନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ନାମୀଦାମୀ ପ୍ରଫେସର ଡଃ ମନ୍ମଥନାଥ ଦାସ, ଡ. କରୁଣାସାଗର ବେହେରା, ଡ. ଅତୁଲ ଚନ୍ଦ୍ର ପ୍ରଧାନ, ଡ. ଅଶୋକ ପରିଡା ତଥା ଡ. ହିମାଂଶୁ ପଟ୍ଟନାୟକ ଆଦି ଆମକୁ ଶିକ୍ଷାଦାନ କରୁଥିଲେ। ଆମେ ସେଠାରେ ପଢିବାକୁ ସୁଯୋଗ ପାଇଥିବାରୁ ମନରେ ଗର୍ବ ଆସୁଥିଲା। ସତ୍ୟଭାମା ସାଙ୍ଗରେ ସେଇଠି ବନ୍ଧୁତା ଅତି ନିବିଡ ହେଲା। ପରସ୍ପରର ସୁଖଦୁଃଖର ସାଥୀ ଆମେ ପାଲଟିଯାଇଥିଲୁ। ମୁଁ ତାଙ୍କୁ ଶ୍ରଦ୍ଧାରେ ସତ୍ୟ ବୋଲି ଡାକୁଥିଲି। ସତ୍ୟଭାମା ଥିଲା ଅତ୍ୟନ୍ତ ସୁନ୍ଦରୀ, ମାର୍ବଲ୍ କଣ୍ଢେଇ ପରି ଥିଲା ତାହାର ଚେହେରା। ଚମ୍ପା ଗୌର ରଙ୍ଗ, ସୁନ୍ଦର ଉଚ୍ଚତା ଆଉ ସୁନ୍ଦର ମିଠା ହସ ଥିଲା ତାହାର ଗହଣା। ସତରେ ସତ୍ୟର ଚେହେରା ଥିଲା ଅତ୍ୟନ୍ତ ଆକର୍ଷଣ। ଆମ ସମୟରେ ଝିଅମାନେ କୌଣସି ଡ୍ରେସ୍ ନିପିନ୍ଧି ଶାଢି ପିନ୍ଧି କଲେଜ୍ ଯାଉଥିଲୁ। ସତ୍ୟଭାମାର ଶାଢି ପିନ୍ଧା କିନ୍ତୁ ଥିଲା ଖୁବ୍ ନିଆରା। ସବୁବେଳେ ଧଳା ଶାଢି ସେ ପିନ୍ଧୁଥିଲା। କୌଣସି ପ୍ରସାଧାନ ସାମଗ୍ରୀ ସେ ବ୍ୟବହାର କରୁନଥିଲା। ଏପରିକି କପାଳରେ ଟିକିଲିଟିଏ ମଧ୍ୟ ପିନ୍ଧୁନଥିଲା। ଧଳା ଶାଢି ପିନ୍ଧି ସତରେ ସିଏ ଦେବୀ ସରସ୍ୱତୀ ଭଳି ଦେଖାଯାଉଥିଲା। ପିଲାଦିନରୁ ସେ ତା'ର ବାପାଙ୍କୁ ହରାଇଥିଲା। ଘରେ ଥିଲେ କେବଳ ବିଧବା ମା'। ଅର୍ଥର ପ୍ରାଚୁର୍ଯ୍ୟ ନଥିଲା, ସାଧାସିଧା ସରଳ ସୁନ୍ଦରୀ ଝିଅଟିଏ କେବଳ ପାଠପଢାର ଲକ୍ଷ୍ୟ ନେଇ ବାଣୀବିହାର ଆସିଥିଲା। ଚଳଚ୍ଚିତ୍ରର ଦୃଶ୍ୟ ଭଳି ସବୁକଥା ମୋର ଆଜି ମନେ ପଡିଯାଉଛି। ଆମେ ଦୁଇଜଣ ଥିଲୁ ସାରା ବିଶ୍ୱବିଦ୍ୟାଳୟର କୃତୀ ଛାତ୍ରୀ। ଆମ ଦୁଇଜଣଙ୍କର ଲକ୍ଷ୍ୟ ଥିଲା କେମିତି ଭଲ ରେଜଲ୍ଟ କରି ବାଣୀବିହାରରୁ ଘରକୁ ଫେରିବୁ।

ନିୟତିର ନିର୍ଦ୍ଦେଶ କିନ୍ତୁ ଭିନ୍ନ ଥିଲା। ଆମ ଇତିହାସ ବିଭାଗର ଗବେଷଣା ସହାୟକ ଭାବରେ ଥିଲେ ଡ. ପ୍ରସନ୍ନ କୁମାର ମିଶ୍ର ମହୋଦୟ। ଶ୍ୟାମଳ ରଙ୍ଗ, ଲମ୍ବା ଚେହେରା। ଆମେ ତାଙ୍କୁ ସାର୍ ବୋଲି ଡାକୁଥିଲୁ ଓ ସମ୍ମାନ ମଧ୍ୟ କରୁଥିଲୁ। ସତ୍ୟ ବ୍ରାହ୍ମଣ ଘରର ଝିଅ ଥିଲା। ପ୍ରସନ୍ନ ସାର ତାକୁ ଦେଖି ଆକର୍ଷିତ ହୋଇଥିଲେ। ନିଜ ତରଫରୁ ସେ ସତ୍ୟକୁ ଭଲ ପାଇ ବସିଲେ। ମନେ ମନେ ସତ୍ୟକୁ ଜୀବନସାଥୀ କରିବାକୁ ସେ ମନସ୍ଥ କରିଥିଲେ। ଅନେକ ସମୟରେ ମୁଁ ରହୁଥିବା ହଷ୍ଟେଲକୁ ଯାଇ ପ୍ରସନ୍ନ ସାର୍ ତାଙ୍କର ମନର କଥା ପ୍ରକାଶ କରି ସତ୍ୟଭାମାକୁ ବୁଝାଇବାକୁ ପ୍ରବର୍ତ୍ତାଇଥିଲେ। ମୋତେ ମଧ୍ୟ ଏସବୁ ଜିନିଷ ଭଲ ଲାଗୁନଥିଲା। ଦୁଇ ସାଙ୍ଗ ଆମେ ଏକଥା ଆଲୋଚନା କରି ଆମେ ବହୁତ ହସୁଥିଲୁ। ସତ୍ୟ ମୋଟେ ଏ ପ୍ରସ୍ତାବରେ ରାଜି ନଥିଲା। କିନ୍ତୁ ପ୍ରସନ୍ନ ସାର୍ ତାଙ୍କୁ ବହୁତ ଭଲ ପାଉଥିଲେ। ସତ୍ୟକୁ ମନାଇବାକୁ ସେ ନିଜ ତରଫରୁ ପ୍ରଚେଷ୍ଟା ଜାରି ରଖିଥିଲେ। ଏସବୁର ମୂକସାକ୍ଷୀ

ମୁଁ ଥିଲି । ପିଜିର ପ୍ରଥମବର୍ଷ ପଢାପଢି ଚାଲିଥାଏ । କ୍ଲାସ୍‌କୁ ନିୟମିତ ଯିବା, ଲାଇବ୍ରେରୀ ଯାଇ ପଢାପଢି କରି ନୋଟ୍ କରିବା ପରେ ଆମେ ପ୍ରାୟ ଦୁଇସାଙ୍ଗ ବ୍ୟସ୍ତ ରହୁଥିଲୁ । ଉର୍ମିଳା ଓ ନିହାରିକା ଆମ ସ୍ପେଶିଆଲ୍ ପେପର କ୍ଲାସ୍ ଆଉ ଦୁଇଜଣ ଝିଅ ଥିଲେ । ଉର୍ମିଳା ବାହାରେ ଭାଇଭାଉଜଙ୍କ ପାଖରେ ରହି ଯିବା ଆସିବା କରି ପଢୁଥିଲା । ଆମେ ଚାରିଜଣ ଟାଉନ୍‌ବସ୍‌ରେ ଉର୍ମିଳା ଘରକୁ ଯାଉଥିଲୁ । ସେଠି ତା ଭାଉଜଙ୍କ ହାତ ରନ୍ଧା ଖାଉଥିଲୁ । ଭାଉଜ ଆମପାଇଁ ଆଚାର ପାଗ କରି ଦେଉଥିଲେ । ଆମେ ବହୁତ ମଜା କରୁଥିଲୁ । ଚାରିଜଣ ସାଙ୍ଗ ହୋଇ ଫଟୋ ଉଠାଉଥିଲୁ । ହଠାତ୍ ଦିନେ ଦେଖିଲି ଆମ ହଷ୍ଟେଲ୍‌ର ଭିଜିଟର ରୁମ୍‌ରେ ବସି ସତ୍ୟଭାମା ଆଉ ପ୍ରସନ୍ନ ସାର୍ ଏକାଠି କଥା ହେଉଛନ୍ତି । ଏକଥା ବିଶ୍ୱାସ କରିପାରିନଥିଲି । ଘରେ ସତ୍ୟର କେହି ମୁରବୀ ନଥିଲେ । ପ୍ରସନ୍ନ ସାର୍ ଜିତିଗଲେ । ତାଙ୍କ ପ୍ରେମ ନିବେଦନକୁ ଆଡ ଆଖିରେ ଦେଖୁନଥିବା ଝିଅଟି ଦିନେ ତାଙ୍କରି କଥାରେ ରାଜି ହୋଇଗଲା । ସେହିବର୍ଷ ସତ୍ୟଭାମା ଆଉ ପ୍ରସନ୍ନ ସାର୍‌ଙ୍କର ବାହାଘର ହୋଇଗଲା । ଆର୍ଯ୍ୟ ବିହାରରେ ଖାଲି ପଡିଥିବା ଗୋଟେ କ୍ୱାର୍ଟରରେ ସେମାନଙ୍କର ବାହାଘର ଅତି ନିରାଡମ୍ବର ଭାବେ ହୋଇଗଲା । ଆମେ କେତେଜଣ ସାଙ୍ଗ ଡିପାର୍ଟମେଣ୍ଟର କିଛି ପ୍ରଫେସର କିଛି ଛାତ୍ରଛାତ୍ରୀ ସେମାନଙ୍କର ବାହାଘରରେ ଉପସ୍ଥିତ ଥିଲେ । ବାହାଘର ପରେ ସତ୍ୟଭାମା ପ୍ରସନ୍ନ ସାର୍‌ଙ୍କ କ୍ୱାର୍ଟରରେ ଯାଇ ରହିଲା । ବୋଧହୁଏ ନିଜକୁ ଅସହାୟ ଭାବି ସେ ସାର୍‌ଙ୍କର ପ୍ରସ୍ତାବରେ ରାଜି ହୋଇଯାଇଥିଲା । ସତ୍ୟଭାମା ପଢୁଥିବା ଅବସ୍ଥାରେ ତା'ର ପ୍ରଥମ ପୁଅ ରାଜା ଜନ୍ମ ହୋଇଥିଲା । ତା ନାମ ରାଜା ମୁଁ ଦେଇଥିଲି । ରାଜା ଥିଲା ଦେଖିବାକୁ ତା ମାଆ ପରି । ଯାହା ହେଉ ସତ୍ୟ ଜୀବନର ଗତିପଥ ସେହି ବାଣୀବିହାରରେ ହିଁ ବଦଳି ଯାଇଥିଲା । ଏହା ଭିତରେ ମୁଁ ସରକାରୀ କଲେଜରେ ଅଧ୍ୟାପିକା ହେଲି । ସତ୍ୟ ମଧ୍ୟ ସରକାରୀ କଲେଜରେ ଅଧ୍ୟାପିକା ହୋଇଥିଲା । ପ୍ରସନ୍ନ ସାର୍‌ଙ୍କ ସହିତ ତା'ର ଜୀବନ ସୁରୁଖୁରୁରେ ଗତି କରୁଥିଲା । ପ୍ରସନ୍ନ ସାର୍ ଆଗ ଚାକିରୀରୁ ଅବସର ନେଲେ । ସତ୍ୟଭାମା ଅଧ୍ୟାପନା କରୁଥିଲା । କଲେଜରୁ ଫେରିବା ପର୍ଯ୍ୟନ୍ତ ପ୍ରସନ୍ନ ସାର୍ ତାକୁ ଘରର ଗେଟ୍ ପାଖରେ ଅପଲକ ନୟନରେ ଅନାଇ ବସୁଥିଲେ । ସତ୍ୟ କୁଆଡେ ଯିବାକୁ ସେ ପସନ୍ଦ କରୁନଥିଲେ । ସେ ଚାହୁଁଥିଲେ ସବୁବେଳେ ସତ୍ୟ ଘରେ ରହି ତାଙ୍କର ଆଗରେ ବୁଲୁଥାଉ । ହେଲେ ଆଜିକୁ ବର୍ଷେ ହେଲା ପ୍ରସନ୍ନ ସାର୍ ସତ୍ୟକୁ ଏକୁଟିଆ ଛାଡିଦେଇ ଅଫେରା ପଥ ପଥୀକ ହୋଇଗଲେଣି । ସତ୍ୟ ଆଜି ଦୁଇଟି ପୁତ୍ର ସନ୍ତାନ ଓ ଗୋଟିଏ କନ୍ୟା ସନ୍ତାନର ଜନନୀ । ତଥାପି ସିଏ ଆଜି ଖୋଜୁଛି ତା'ର ଜୀବନସାଥୀକୁ । ବେଳେବେଳେ ଫୋନ୍ କରି ସତ୍ୟ ତା'ର ମନର କଥା ମୋତେ କୁହେ । ଶୀତାଲୋ ଏତେ ଭଲ ପାଉଥିବା ଲୋକଟି ମୋତେ ଏକୁଟିଆ ଛାଡି ଦେଇ ଚାଲିଗଲା, କେମିତି ମୁଁ ବଞ୍ଚିବି ? ଏବେ ସତ୍ୟଭାମା ତାହାର ଅଧ୍ୟାପିକା ଚାକିରୀରୁ ଅବସର ନେଇ ଘରେ ରହୁଛି । ଜୀବନସାଥୀଟିଏ ମଣିଷର ବେଶୀ ଲୋଡା ହୁଏ । ଅବସର ନେଲା ପରେ । ହେଲେ ଆଜି ଅବସର ଜୀବନରେ ସତ୍ୟ ଏକା ହୋଇଯାଇଛି । ସବୁବେଳେ ନିଃସଙ୍ଗ କପୋତିଟିଏ ପରି ଗୁମୁରି ଗୁମୁରି କାନ୍ଦୁଛି । ନିଦ ବଟିକା ନଖାଇଲେ ନିଦ ହେଉନି । ହେ ଭଗବାନ ତାକୁ ଶକ୍ତି ଦିଅ । ବାକିତକ ଜୀବନ ଚାଲିବାରେ ତାକୁ ସାହା ହୁଅ । ସତରେ ଲୋ ସାଙ୍ଗ ଆଉ କିଛି ଲେଖିବାକୁ କଲମ ମୋର ଚାଲୁନାହିଁ । ଆଖି ଲୁହରେ ଭିଜିଗଲାଣି । ଜୀବନ କେତେ କ୍ଷଣସ୍ଥାୟୀ । ଦେଖୁ ଦେଖୁ ସରିଗଲା । ଫେରି ଆସନ୍ତାନି ପୁଣି ଥରେ ସେହି ଅତୀତ । କେମିତି ଫେରିବ, ଅତୀତ ପରା ଅଫେରା ।



# ପ୍ରସନ୍ନ ସାରଙ୍କ ସ୍ମୃତିରେ

*ଡକ୍ଟର ସସ୍ମିତା ତ୍ରିପାଠୀ*

ମାନବ ଜୀବନ ନୁହଁଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜିଏନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।

ମନୁଷ୍ୟ ନିଜର କର୍ମଦ୍ୱାରା ହିଁ ସଂସାରରେ ପରିଚିତ ହୋଇଥାଏ । ତାହାର କୃତି ହିଁ ତାକୁ ଅମର ରଖିଥାଏ । ସେହିପରି ପ୍ରସନ୍ନ ସାର୍ ଯଦିଓ ଆଜି ଆମ ଗହଣରେ ନାହାଁନ୍ତି । ସେ ତାଙ୍କର କୃତଗୁଡିକ ଦ୍ୱାରା ଅମର ହୋଇପାରିଛନ୍ତି । ସତ୍ୟଭାମା ଅପା (ପ୍ରସନ୍ନ ସାରଙ୍କ ପତ୍ନୀ)ଙ୍କ ସହିତ ମୋର କଲେଜରେ ରୁମ୍‌ମେଟ୍ ଥିଲେ । ଅପା ଅତି ସ୍ନେହୀ, ମୋର ବଡ ଭଉଣୀ ସଦୃଶ ତାଙ୍କ ମାଧ୍ୟମରେ ହିଁ ସାର୍‌ଙ୍କ ସହିତ ମୋର ପରିଚିତ । ଓଡିଶା ଇତିହାସରେ ସାର୍‌ଙ୍କ ଗବେଷଣାକୃତ ପ୍ରବନ୍ଧ ଗୁଡିକ ପଢି ମୁଁ ତାଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲି ।

ଗବେଷଣା ପ୍ରତି ତାଙ୍କର ନିଷ୍ଠା ସତରେ ବିରଳ, ବିଭିନ୍ନ ଗବେଷଣାତ୍ମକ ପ୍ରବନ୍ଧ ଲେଖିବା ପାଇଁ ସେ ମୋତେ ଉତ୍ସାହିତ କରୁଥିଲେ ଓ ଦିଗ୍‌ଦର୍ଶନ ଦେଉଥିଲେ । ସେ ଥିଲେ ଅତି ସରଳ ଓ ନିରାଡମ୍ବର ପ୍ରିୟ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଗବେଷଣାରତ ଥିଲେ ଓ ଓଡିଶା ଇତିହାସରେ ଅନେକ ଶୂନ୍ୟଲୋଡିତ ତଥ୍ୟ ଉପରେ ଗବେଷଣା ପାଇଁ ସେ ଚେଷ୍ଟିତ ଥିଲେ । ତାଙ୍କ ରଚିତ ପ୍ରବନ୍ଧ ଓ ପୁସ୍ତକ ଓଡିଶା ଇତିହାସରେ ଗବେଷଣା ପାଇଁ ଅନେକ ତଥ୍ୟ ଯୋଗାଇବ ଓ ଇତିହାସ ପଢୁଥିବା ଅନେକ ଛାତ୍ରଛାତ୍ରୀ ଏହାଦ୍ୱାରା ଉପକୃତ ହେବେ । ସାର୍‌ଙ୍କ ତିରୋଧାନ ଓଡିଶା ଇତିହାସ ରଚନା କ୍ଷେତ୍ରରେ ଏକ ଅପୂରଣୀୟ କ୍ଷତି ।

ଆମେ ସମସ୍ତେ କାଳର ସ୍ୱାଧିନ । ଈଶ୍ୱରଙ୍କ ନିକଟରେ ମୋର ପ୍ରାର୍ଥନା ଯେ ଏହି ଅପୂରଣୀୟ କ୍ଷତି ସହିବା ପାଇଁ ତାଙ୍କ ପରିବାରକୁ ସାହସ ଓ ଧୈର୍ଯ୍ୟ ପ୍ରଦାନ କରନ୍ତୁ । ସାର୍‌ଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ତାଙ୍କର ଅମର ଆତ୍ମା ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

**ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି**
**ନୈନଂ ଦହତି ପାବକଃ**
**ନଚୈନଂ କ୍ଲେଦୟୋନ୍ତ ଆପେ**
**ନ ଶୋଷୟତି ମାରୁତଃ**



# ଅପାଶୋରା ସ୍ମୃତିକୁ---ଦି' ପଦ

*ପ୍ରଫେସର ବିଷ୍ଣୁପ୍ରିୟା ଓତା*

ମଣିଷ ଜନ୍ମନିଏ କର୍ମ କରେ। ଜୀବନ ନଈର ସୁଅରେ ଭାସି ଚାଲେ। କେତେବେଳେ ଦୁଃଖ କେତେବେଳେ ସୁଖ, ହସ କାନ୍ଦ, ଲୁହ, କୋହରେ ଭରା ତାର ଏ ଜୀବନ। ତେବେ ସ୍ମୃତି ଚିର ଅମର। ଖୁବ୍ ମନକଷ୍ଟରେ ଥିଲାବେଳେ ଅତୀତର କିଛି ଆନନ୍ଦ ମୁହୂର୍ତ୍ତ ସ୍ମୃତି ହୋଇ ଚିରଦିନ ସ୍ମରଣରେ ରହିଯାଏ ଓ ବେଳେବେଳେ ମନେ ପକାଇଦିଏ କିଛି ଅପାଶୋରା ଘଟଣାସବୁକୁ। ଆମେ ସମସ୍ତେ ଜାଣୁ "ଜାତସ୍ୟହଃ ଧ୍ରୁବ ମୃତ୍ୟୁଃ" "ମର୍ତ୍ତମଣ୍ଡଳେ ଦେହବହି ଦେବତା ହେଲେ ହେଁ ମରଇ" ତଥାପି ମଣିଷ ନିଜର କର୍ମ କରିଯାଏ। ସଂସାରରେ ତ ବହୁଲୋକ ଅଛନ୍ତି ମାତ୍ର କିଛି ଲୋକ ବେଶ୍ ମନେରହନ୍ତି ତାଙ୍କର ସୁକର୍ମ ଓ ବ୍ୟକ୍ତିତ୍ୱ ନିମନ୍ତେ। ସେଇଭଳି ଜଣେ ଚରିତ୍ର ପ୍ରଫେସର ପ୍ରସନ୍ନ କୁମାର ମିଶ୍ର। ଆମେ ସବୁ ତାଙ୍କୁ ଭାଇନା ଡାକୁ। ଏହି ଭାଇନା ସମ୍ବୋଧନ ର କାରଣ ସେ ଆମର ପ୍ରିୟ ଅପା ଡକ୍ଟର ସତ୍ୟଭାମା ପତିଙ୍କର ସ୍ୱାମୀ। ସତ୍ୟଭାମା ଅପା ଓ ତାଙ୍କ ପରିବାର ଅର୍ଥାତ୍ ଭାଇନା (ପ୍ରସନ୍ନ କୁମାର ମିଶ୍ର) ଦୁଇ ପୁଅ ରାଜା, ଛୁନୁ ଓ ଗେହ୍ଲାଝିଅ ଲିଜା ଆଉ ସବୁଠୁ ବେଶୀ ମନେ ପଡୁଥିବା ମାଉସୀ (ସତ୍ୟଭାମା ଅପାଙ୍କ ବୋଉ)ଙ୍କ ସହ ଦୀର୍ଘ ୪ ଦଶନ୍ଧିର ସମ୍ପର୍କ ୧୯୮୭ରୁ ଏ ଯାବତ୍।

ଭାଇନା ଜଣେ ଗୁଣୀ ବ୍ୟକ୍ତି। ସର୍ବଦା ଗବେଷଣାତ୍ମକ କାମରେ ବ୍ୟସ୍ତ ଥାନ୍ତି। ସତ୍ୟଭାମା ଅପା ଚିହ୍ନେଇ ଦେଇଥିଲେ। ଆମ ବିଷ୍ଣୁ ଭାଇ ଲେଖାଲେଖି କରେ ରିସର୍ଚ୍ଚ କରୁଛି ଇତ୍ୟାଦି ଇତ୍ୟାଦି। ତେଣୁ ଯେତେବେଳେ ଭାଇନାଙ୍କ ସହ ତାଙ୍କଘରେ ଭେଟ ହୁଏ ସେ ମୋର ବିଭିନ୍ନ ଲେଖା ସମ୍ପର୍କରେ ମତାମତ ଦେବା ସହ ଅନେକ ସାହିତ୍ୟିକ ଓ ଐତିହାସିକ ଗବେଷଣା ସଂପର୍କିତ ଆଲୋଚନା କରନ୍ତି। ତେବେ ପ୍ରଫେସର ମିଶ୍ର (ଭାଇନା)ଙ୍କର ବ୍ୟକ୍ତିତ୍ୱ ବେଶ୍ ନିଆରା। ତାଙ୍କ ଚେହେରାରେ ଗାମ୍ଭୀର୍ଯ୍ୟ ଥାଏ। ବହୁ ଛାତ୍ର ଛାତ୍ରୀଙ୍କୁ ଅନେକ ସାହାଯ୍ୟ ସହଯୋଗ କରିଥାନ୍ତି। ବିଭାଗରେ (ଇତିହାସ) ବେଶ୍ ବଡ ବଡ ପ୍ରଫେସରଙ୍କ ସହ କାମ କରୁଥିଲେ ହେଁ ସେ ସମସ୍ତଙ୍କର ପ୍ରିୟ ଭାଜନ ହୋଇପାରିଥିଲେ। ବାଣୀବିହାର ପାଣିଟାଙ୍କୀରେ ତାଙ୍କ କ୍ୱାଟର ଥିଲା। ମୁଁ ମଝିରେ ମଝିରେ ବାଣୀବିହାର ଗଲେ ତାଙ୍କ ଘରକୁ ଯାଏ। ସତ୍ୟଭାମା ଅପା କ'ଣ ଟିକେ ଖାଇବା ନ ଦେଲେ ଛାଡିବେନି ମୁଁ ତରତର ହୋଇ ବାହାରି ଆସିଲା ବେଳକୁ ସେ କହନ୍ତି ବୋଉର ହାତରନ୍ଧା କମ୍ ତେଲ ମସଲାରେ କଖାରୁ ଡଙ୍କ ସାରୁ ଆଳୁ ପକା ସେ ତରକାରୀ ଏତେ ସ୍ୱାଦିଷ୍ଟ ଯେ ଆଜି ବି ମୁଁ ମନେ ପକାଏ। ତେବେ ଭାଇନାଙ୍କ କଥା କହିଲେ ତାଙ୍କ ବ୍ୟକ୍ତିତ୍ୱରେ ଗୋଟେ ଭିନ୍ନ ଭାବ ମୁଁ ଲକ୍ଷ୍ୟ କରିଛି ଯାହାକୁ ଆମେ ଇଂରାଜୀରେ Principle ବୋଲି କହୁ। ଜଣେ ନୀତିନିୟମ ମଣିଷ ପ୍ରଫେସର ମିଶ୍ର। ନିଜ ପରିବାରକୁ ପାଇ ଖୁବ୍ ଦୁଃଖରେ ବ୍ୟତିବ୍ୟସ୍ତ ହୋଇପଡେ। ମାତ୍ର ମୁଁ ଖବର ଜାଣିଲାବେଳକୁ ତାଙ୍କ ମରଶରୀରକୁ ଦେଖିବାର ସୁଯୋଗ ନଥିଲା। ଫେରିଗଲି ସୁଦୂର ଅତୀତକୁ ସମାନ ଜାଗାରେ ଅର୍ଥାତ୍ ରମାଦେବୀ ମହିଳା ମହାବିଦ୍ୟାଳୟର ମର୍ଣ୍ଣିଂସିଫ୍ଟରେ ଚାକିରୀ ଷ୍ଟାଫ୍ କମ୍। ତେଣୁ ପରସ୍ପର ମଧ୍ୟରେ ସଂପର୍କ ଖୁବ୍ ଭଲ। ସେ ସମୟରେ ବିଜୟିନୀ ମହାନ୍ତି, ଅପରାଜିତା ମହାପାତ୍ର, ସରିତାଞ୍ଜଳି ବହିଦାର, ଆରତୀବିଶ୍ୱାଳ ସୀମା ଜେନା, ମନୋରମା ମହାପାତ୍ର, ସ୍ୱର୍ଗତା ସ୍ୱାତୀ ମହାନ୍ତି, ଚିନ୍ମୟୀ ମହାପାତ୍ର, ପ୍ରିୟମ୍ବଦା ପଟ୍ଟନାୟକ, ସରୋଜିନୀ ପଟ୍ଟନାୟକ, ଜୟନ୍ତିକା ମହାନ୍ତି ଆଦି ବହୁ ଅଧ୍ୟାପିକାଙ୍କ ଭିତରେ ଖୁବ୍ ବନ୍ଧୁତ୍ୱ। ବେଳେବେଳେ

କୌଣସି ଭଲ କାର୍ଯ୍ୟକ୍ରମ ବା ଉତ୍ସବରେ ଅନନ୍ତ ବାସୁଦେବ ବା ଲିଙ୍ଗରାଜଙ୍କ ପ୍ରସାଦ ଆସେ। ଖାଇସାରି ବଳିଗଲେ ପଖାଳ କରାଯାଏ ପରଦିନ ପଖାଳ ଦହି ଓ ମ୍ୟାଡମମାନେ ଘରୁ ଭଜା ଭଜି, ଭର୍ତ୍ତା ଆଣିଥାନ୍ତି ଏକାଠି ବସି ଖିଆପିଆ ହୁଏ ପଖାଳ ଭୋଜି। ଏହିଭଳି ଏକ ପରିବାର ଭଳି ସକାଳ ପାଳି (morning shift) ର ଅଧ୍ୟାପିକା ମାନେ ଚଳନ୍ତି। ଆମେ ଷ୍ଟାଫ୍ କ୍ଲବରେ ସତ୍ୟଭାମା ଅପା ସବୁବେଳେ ଥାନ୍ତି। ସେ ଦେଖିବାକୁ ଯେଭଳି ସୁନ୍ଦରି, ସେହିଭଳି ସ୍ନେହୀ ମେଳାପି ଓ କାମିକା ଲୋକ। ଏମିତି ଭାବରେ ତାଙ୍କ ସହିତ ସମ୍ପର୍କ ଘନିଷ୍ଠତାରେ ପରିଣତ ହୋଇଥିଲା। ମୋ ଠାରୁ ବଡ ତେଣୁ ଗୋଟିଏ ସାନଭଉଣୀର ସ୍ନେହ ମମତା ଓ ଭଲ ପାଇବା କ୍ରମେ ଭାଇନାଙ୍କ ସହ ପରିଚୟ ସତ୍ୟଭାମା ଅପାଙ୍କ ଏକ ନୀତିନିୟମ ଓ ଶୃଙ୍ଖଳାରେ ରଖିବା ସହିତ, କାର୍ଯ୍ୟକ୍ଷେତ୍ରରେ ମଧ୍ୟ ବେଶ୍ ଶୃଙ୍ଖଳିତ ରଖିବାରେ ପ୍ରୟାସ କରିଥାନ୍ତି। ଅନେକ ସମ୍ବାଦ ପତ୍ରରେ ସେ ବିଭିନ୍ନ ଜରୁରୀ ପ୍ରସଙ୍ଗ ସ୍ତମ୍ଭ ଆକାରରେ ଲେଖିଥାନ୍ତି। ସାହିତ୍ୟର ରୁଚି ତାଙ୍କର ଯଥେଷ୍ଟ ଥିଲା। ଇତିହାସ ଓ ସାହିତ୍ୟର ମଧୁର ସମନ୍ୱୟରେ ତାଙ୍କ ରଚନା ବେଶ ତୀକ୍ଷ୍ଣ ଓ ବୁଦ୍ଧିଦୀପ୍ତ। ତେବେ ମଣିଷ ସମୟର ଦାସ। "ଦଇବ ଦଉଡି ମଣିଷ ଗାଈ, ଯେଣିକି ଟାଣିଲେ ତେଣିକି ଯାଇ" ସେହିପରି ନିଜର ଅବସରରେ ପିଲାମାନଙ୍କ ଚାକିରି, ବିବାହ, ବିଭିନ୍ନ ପ୍ରକାର ଶାରୀରିକ ଅସୁସ୍ଥତା ସତ୍ତ୍ୱେବି ସେ ହାର ମାନୁ ନଥିଲେ, ପରସ୍ଥିତି କୁ ଅତିକ୍ରମ କରି ସ୍ୱାଭିମାନର ଜୀବନ ଜିଇଁ ରହିଥିଲେ। କବିବର ରାଧାନାଥ ଲେଖିଥିଲେ **"କେହି ରହିନାହିଁ ରହିବ ନାହିଁଟି ଭବରଙ୍ଗ ଭୂମି ତଳେ, ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡିବେ କାଳବଳେ"** ତେଣୁ ଭାଇନା ମର ଶରୀର ଛାଡି ଆରପାରିକୁ ଚାଲିଗଲେ ସିନା ତାଙ୍କର ସ୍ନେହ, ଆଦର୍ଶ ସ୍ୱାଭିମାନ ସବୁ କିଛି ଭିତରେ ସେ ଜୀଇଁ ରହିଛନ୍ତି ରହିଥିବେ ନିଜ ପରିବାରରେ, ବନ୍ଧୁମାନଙ୍କ ଗହଣରେ ଛାତ୍ରଛାତ୍ରୀ ଓ ଗବେଷକଙ୍କ ହୃଦୟ ରାଜ୍ୟରେ। ତାଙ୍କ ସୃଷ୍ଟିଶୀଳ କର୍ମରେ ହିଁ ସେ ଜୀଇଁ ରହିବେ।

"ମାନବ ଜୀବନ ନୁହଁଇ କେବଳ ବର୍ଷମାସ ଦିନଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକତାର ଜୀବନର ମାନଦଣ୍ଡ।

ଆଜି ପ୍ରଥମ ବାର୍ଷିକ ଶ୍ରାଦ୍ଧରେ ତାଙ୍କ ଆତ୍ମାର ଶାନ୍ତି କାମନା କରୁଛୁ

ଜୟ ଜଗନ୍ନାଥ

ଘର ନଂ ୨୦୭
କାନନ୍ ବିହାର ଫେଜ୍ ୨
ପଟିଆ ଭୁବନେଶ୍ୱର ୭୫୧୦୩୧



# ପ୍ରସନ୍ନ ଭାଇନାଙ୍କ ପାଇଁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳୀ

*ଡ଼ଃ ପ୍ରତିଭା କୁମାରୀ ନନ୍ଦ*

"ଜାତସ୍ୟ ହି ଧ୍ରୁବୋମୃତ୍ୟୁ" ଗୀତାର ଏ ମହତ୍ ବାଣୀ ସୃଷ୍ଟିର ଏକ ଚିରନ୍ତନ ସତ୍ୟ। ତଥାପି ପ୍ରିୟଜନର ବିଚ୍ଛେଦରେ ମଣିଷ ବ୍ୟାକୁଳ ନ ହୋଇ ରହିପାରେନି। ଏ ଜୀବନରେ ପ୍ରତିଦିନ ଘଟୁଥିବା ବହୁ ଘଟଣା ମଧ୍ୟରୁ କିଛି ଭୂଲି ହୋଇଯାଏ, କିଛି ସୁଖଦ ଓ ଦୁଃଖ ଘଟଣା ସବୁଦିନ ପାଇଁ ମନେ ରହିଯାଏ। ସେହିପରି ଏକ ଅଶ୍ରୁଳ ଓ ଦୁଃଖଦ ଘଟଣା ମୋର ପ୍ରିୟ ପ୍ରସନ୍ନ ଭାଇନାଙ୍କ ବିୟୋଗ। ତାହା ହିଁ ତ ସ୍ମୃତି। ସେଇ ସ୍ମୃତି ପସରାରୁ ସୂତା ଖିଅଟିଏ କାଢ଼ି ଏଣେ ତେଣେ ବିଛେଇ ହୋଇ ପଡ଼ିଥିବା ସ୍ମୃତିର ଫୁଲକୁ ଏକାଠି କରି ଗୁନ୍ଥିବାକୁ ଚେଷ୍ଟା କରୁଛି।

କଟକ ଜିଲ୍ଲାର ତିଗିରିଆ ଗୋପୀନାଥପୁର ଶାସନରେ ପିତା ସ୍ୱର୍ଗତ ଶ୍ରୀଯୁକ୍ତ କାଳନ୍ଦୀ ମିଶ୍ର ଓ ମାତା ସ୍ୱର୍ଗତ ଶ୍ରୀମତୀ ସରଳା ଦେବୀଙ୍କ କୋଳରେ ଜନ୍ମଗ୍ରହଣ କରିଥିବା ମୋ ପ୍ରସନ୍ନ ଭାଇନା ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ଜଣେ ପ୍ରଫେସର। ଅବସର ଗ୍ରହଣ କରିବା ପର୍ଯ୍ୟନ୍ତ ଇତିହାସ ବିଭାଗର ବିଭାଗୀୟ ମୁଖ୍ୟ ଭାବେ ସେ ତାଙ୍କର ଉତ୍ତରଦାୟୀତ୍ୱ ଖୁବ୍ ସୁଚାରୁ ରୂପେ ସଂପାଦନ କରି ଆସିଥିଲେ। ଏତେ ଉଚ୍ଚ ପଦବୀରେ ଥାଇ ମଧ୍ୟ ସେ ଥିଲେ ଅତି ସରଳ ଓ ସ୍ନେହୀ। ତେବେ ସରଳତା ଭିତରେ ବି ସେ ଥିଲେ ସ୍ୱାଭିମାନୀ, ଦୃଢ଼ମନା। ମୌଳିକ ଚିନ୍ତା- ଚେତନାରେ ପରିପୁଷ୍ଟ ଏକ ବଳିଷ୍ଠ ନିର୍ଭୀକ ବ୍ୟକ୍ତିତ୍ୱର ଅଧିକାରୀ। ସମସ୍ତେ ଆଜି ତାଙ୍କୁ ଝୁରି ହେଉଛନ୍ତି।

ଚାହୁଁ ଚାହୁଁ ଏକବର୍ଷ ବିତିଗଲା। ଗତବର୍ଷ ଠିକ୍ ଏହି ଦିନରେ ତୁମେ ପ୍ରାଣପ୍ରିୟା ସହଧର୍ମିଣୀ ସତ୍ୟଭାମା, ପ୍ରିୟ ସନ୍ତାନ ସନ୍ତତି, ନାତିନାତୁଣୀ ଜ୍ଞାତି କୁଟୁମ୍ବ ସାଙ୍ଗସାଥି ତଥା ପ୍ରିୟ ପରିଜନଙ୍କୁ ଶୋକସାଗରରେ ଭସାଇଦେଇ ପରଲୋକ ଗମନ କଲ। ସତରେ ଆଉ ତୁମ ସହ ଦେଖା ହେବନି ଏ ଜୀବନରେ, ଭାବିଲା ବେଳକୁ କଷ୍ଟଲାଗୁଛି। ଆଖିପତା ଲୁହରେ ଭିଜିଯାଉଛି। ତୁମର ଏହି ପ୍ରଥମ ପୁଣ୍ୟତିଥିକୁ ଆକଳନ କରିବା ସମ୍ଭବ ହୋଇପାରୁନାହିଁ।

ହେଲେ ମନକୁ ବୁଝେଇବାକୁ ପଡୁଛି। ସଂପର୍କର ସେତୁ ଅତି ଦୃଢ଼। ଦୂର ଆକାଶରେ ଥିବା ଚନ୍ଦ୍ର ଓ ଜଳରେ ରହିଥିବା କୁମୁଦ, ଉଭୟଙ୍କର ନିବିଡ଼ ସଂପର୍କ। ପୁନଶ୍ଚ ସୂର୍ଯ୍ୟ ଓ ପଦ୍ମ ମଧ୍ୟରେ ଅନୁରୂପ ସଂପର୍କ। ଯେପରି ହାତୀ ବନସ୍ତରେ ବୁଲୁଥିଲେ ବି ରାଜାଙ୍କର, ସେମିତି ତୁମେ ସ୍ୱର୍ଗ ଧାମରେ ଥାଇ ବି ଆମର। ଏଇଠି ତୁମର ସମସ୍ତେ "ତୁମକୁ" ମନେ ପକାଉଛନ୍ତି।

ବାଣୀବିହାର ପାଠପଢ଼ା, ହଷ୍ଟେଲ ଜୀବନ କଥାସବୁ ଆଜି ମନେ ପଡ଼ିଯାଉଛି। ସତ୍ୟଭାମା, ପ୍ରେମ ମଞ୍ଜରୀ ଓ ପ୍ରତିଭା କୁମାରୀ। ସମସ୍ତେ କହନ୍ତି। "ସତ୍ୟ-ପ୍ରେମ-ପ୍ରତିଭା"। ଆମେ ଥିଲୁ ସହ ପାଠିନୀ, ହଷ୍ଟେଲର ଅନ୍ତେବାସିନୀ। ନିବିଡ଼ ଥିଲା ଆମ ଭିତରେ ବନ୍ଧୁତ୍ୱ। ସଂପର୍କ ଅତି ମଧୁର। ଆମ ତିନିଜଣଙ୍କର ଡ଼ିପାର୍ଟମେଣ୍ଟଥିଲା ଅଲଗା, ମଧ୍ୟ ଆମର ପ୍ରକୃତି। ଆମ ଭିତରେ ବେଳେ ବେଳେ ମତ ଭେଦ ହୁଏ, କିନ୍ତୁ କେବେ ମନାନ୍ତର ହୋଇନି। ଆଉ ଝଗଡ଼ାର ପ୍ରଶ୍ନ ତ ଉଠୁନି। ଅନ୍ୟମାନେ ଇର୍ଷା କରନ୍ତି।

ମୋର ଅତି ଆଦରର ପ୍ରିୟ ବାନ୍ଧବୀ ସତ୍ୟଭାମା-ସତ୍ୟ। ଧୀର, ସ୍ଥିର, ଶାନ୍ତ ସ୍ୱଭାବର। ମୁହଁରେ ମଧୁର ସ୍ମିତହାସ୍ୟ। କର୍ମଚଞ୍ଚଳ। କାହାପାଇଁ କିଛି ଆପତ୍ତି ଅଭିଯୋଗ ନାହିଁ। ସମସ୍ତଙ୍କର ପ୍ରିୟ। ଅନ୍ୟ ପ୍ରିୟ ବାନ୍ଧବୀ ମୋର ପ୍ରେମ-ବୟସ ତୁଳନାରେ ପରିପକ୍ୱ ବୁଦ୍ଧି, ବିଚାରବନ୍ତ, ଦୂରଦୃଷ୍ଟି ସଂପନ୍ନ। ସହିବା ଗୁଣ ତାର ବହୁତ ଅଧିକ। କୌଣସି ପରିସ୍ଥିତିରେ ବିଚଳିତ

ନ ହୋଇ ଧୈର୍ଯ୍ୟର ସହ ସବୁ ସମ୍ଭାଳି ନିଏ। ସମସ୍ତଙ୍କର ଭଲମନ୍ଦ ଦୁଃଖସୁଖର ସାଥି ସିଏ ହଷ୍ଟେଲରେ। ଆଉ ପ୍ରତିଭା (ମୁଁ) ବି ଭାରି ଭଲ ହସଖୁସି ସ୍ୱଭାବ, ମିଶିଯାଏ ସମସ୍ତଙ୍କ ସହ ଖୁବ୍ ଶୀଘ୍ର। ହେଲେ ପରିବାରର ପ୍ରଥମ ସନ୍ତାନ ଭାବେ ମୁଁ ଥିଲି ଟିକିଏ ଜିଦିଆ ଆଉ ଅଭିମାନୀ।

ସାଙ୍ଗମାନଙ୍କ ଭିତରେ କାହାର କିଛି କଥା ଖରାପ ଲାଗିଲେ ରାଗିଯାଏ, ସାଙ୍ଗେ ସାଙ୍ଗେ ମୁହଁରେ କହିଦିଏ। ଆଉ କିଛି ସମୟ ପରେ ପୁଣି ସବୁ ସ୍ୱାଭାବିକ, କାହିଁକି ରାଗିଥିଲି, ସେ କାରଣଟା ବି ଭୁଲିଯାଇଥାଏ। ମୋ ସାଙ୍ଗମାନେ ସମସ୍ତେ ଜାଣିଛନ୍ତି, ସହିଯାନ୍ତି। ପ୍ରେମ ସମସ୍ତଙ୍କୁ ବୁଝେଇଦିଏ ଶାନ୍ତ କରେଇଦିଏ। ବେଳେ ବେଳେ ମତେ ଆକଟ କରେ। ଈଶ୍ୱରଙ୍କୁ କୋଟି କୋଟି ଧନ୍ୟବାଦ, ମତେ ଏପରି ସାଙ୍ଗ ଦେଇଛନ୍ତି। ଆଜି ପର୍ଯ୍ୟନ୍ତ ମଧ୍ୟ ସମସ୍ତଙ୍କ ସହ ସଂପର୍କ ଭଲଅଛି ନିଜ ପରିବାର ଜଞ୍ଜାଳ ସତ୍ତ୍ୱେ ଯୋଗାଯୋଗ ରହିଅଛି।

ଆମେ ପଢ଼ିବାବେଳେ ପ୍ରଥମେ ସତ୍ୟଭାମାର ବାହାଘର ହୁଏ ପ୍ରସନ୍ନ ଭାଇନାଙ୍କ ସାଙ୍ଗରେ। ସେଥିରେ ବିଶ୍ୱବିଦ୍ୟାଳୟର ଜଣେ ଶିକ୍ଷକ, ମାନ୍ୟଗଣ୍ୟ ବ୍ୟକ୍ତି। ଆମେମାନେ ଥିଲୁ ସାଧାରଣ ଛାତ୍ରୀ। ଆମେ ଟିକିଏ ଡ଼ରୁଥିଲୁ ମନେମନେ। ଭାଇନାଙ୍କ ସହ ମିଶୁଥିଲୁ ଯଦିଓ, ସଂଭ୍ରମତା ରକ୍ଷାକରି ଚଳୁଥିଲୁ। ହେଲେ ସତ୍ୟର ଅନ୍ତରଙ୍ଗ ପ୍ରିୟ ବାନ୍ଧବୀ ଭାବରେ ଭାଇନାଙ୍କର ବ୍ୟବହାର ଅତି ସୁନ୍ଦର ଆମ ପାଇଁ, ସ୍ନେହପୂର୍ଣ୍ଣ କଥାବାର୍ତ୍ତା। ଅନ୍ତର୍ଯ୍ୟାମୀ ପରି ସେ ସମସ୍ତଙ୍କର ଅନ୍ତର କଥା ଜାଣି ପାରୁଥିଲେ ବୋଧେ। ସମସ୍ତଙ୍କର ମନ ବୁଝିଲା ପରି କଥାବାର୍ତ୍ତା କରନ୍ତି। ତାଙ୍କୁ ସମସ୍ତେ ଭଲ ପାଆନ୍ତି। ଅତି ଅଳ୍ପ ଦିନରେ ସେଇ ସ୍ନେହୀ ମଣିଷଟି କେଡ଼େ ଆପଣାର ହୋଇଗଲେ!!! ମୁଁ ଜାଣିନି, କେବେ ସେ "ଭିଣୋଇ-ଭାଇନା"ରୁ ମୋର ନିଜ ଭାଇନା ହୋଇଗଲେ! ମତେ ଲାଗେ, ମୋ ଭାଇନା ମତେ ସବୁଠୁ ବେଶୀ ଭଲପାଆନ୍ତି। ଭଲମନ୍ଦ, ସୁବିଧା ଅସୁବିଧା ସବୁ କଥା ତାଙ୍କ ପାଖରେ ମୁଁ କହିଦିଏ। ଏକ ନିର୍ଭର ଯୋଗ୍ୟ ଆଶ୍ରୟସ୍ଥଳ। ଆମର ସେ ବୟସର ଛାତ୍ରୀ ଜୀବନରେ ଅତି କଷ୍ଟକର ଲାଗୁଥିବା ଜଟିଳ ପରିସ୍ଥିତିର କେଡ଼େ ସୁନ୍ଦର ସମାଧାନ ବାହାର କରିଦିଅନ୍ତି। ମତେ ଲାଗେ ମୋ ଭାଇନା ସତରେ କେତେ ଭଲ। ଗର୍ବରେ ଛାତି କୁଣ୍ଢେମୋଟ ହୋଇଯାଏ। ମନରେ ଆସେ "ଏମିତି ଭାଇ, ଜଗତେ ନାହିଁ କାହାର ବି ନାହିଁ।

୯୭୮ ମସିହା କଥା। ଚାକିରୀ ଜୀବନ ଆରମ୍ଭ ହେଲା ରାଉରକେଲାରେ। ସାଙ୍ଗେ ସାଙ୍ଗେ ବାହାଘର। ଶାଶୁ ଶ୍ୱଶୁର ପ୍ରଥମରୁ ମୋ ପାଖରେ। ଆରମ୍ଭରୁ ପ୍ରଥମ ବାଇଶି ବର୍ଷ କଟିଗଲା ପଶ୍ଚିମ ଓଡ଼ିଶାରେ। ସେତେବେଳେ ଆଜିପରି ଗମନାଗମନର ସୁବିଧା ଏତେ ନଥିଲା। ତେବେ ଛୁଟିରେ ଆମ ପରିବାର ଘରକୁ ଆସିବା ବେଳେ କେବେ କେବେ ଭୁବନେଶ୍ୱର ଆସୁ। ଭାଇନାଙ୍କ ବାଣୀବିହାର କ୍ୱାଟରରେ ତାଙ୍କର ହସଖୁସିର ସଂସାରରେ ସମସ୍ତଙ୍କ ସହ ଦେଖାସାକ୍ଷାତ ହୁଏ। ସେବି ସେମିତି ସବୁବେଳେ ନୁହେଁ। ହେଲେ ଭାଇନାଙ୍କର ସ୍ନେହଭରା କଥା ମନରେ ଖୁସି ଆଣିଦିଏ ସତ୍ୟ ମଧ୍ୟ ପୁରା ବଡ଼ ଭାଉଜର ଭୂମିକାରେ ଯଥାର୍ଥ ଦାୟୀତ୍ୱ ତୁଲାଏ ପରବର୍ତ୍ତୀ ସାକ୍ଷାତ ପର୍ଯ୍ୟନ୍ତ ସେଇ ମଧୁର ସ୍ମୃତି ମନରେ ରହିଯାଏ।

ତୁମ କଥା ହସ, ବହୁତ ମନେ ପଡୁଛି। ଏଇ ସ୍ମରଣିକା ଟି ତୁମର ଗୁଣାବଳୀରେ ସୁଶୋଭିତ ଓ ପରିମଣ୍ଡିତ। ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତୁମ ସଂସ୍ପର୍ଶରେ ଆସିଥିବା ପ୍ରିୟ ପରିଜନମାନେ ନିଜ ନିଜ ଅନ୍ତରର ଉଚ୍ଛ୍ୱାସକୁ ତଥା ଭାବାବେଷକୁ ପରିପ୍ରକାଶ କରିଛନ୍ତି। ତୁମ ସ୍ମୃତିମାନଙ୍କୁ ଏକାଠି କରି ଏଇ ଅଭୂଲା ସ୍ମୃତି ସ୍ମରଣିକାଟିକୁ ତୁମ ପ୍ରତିଛବି ନିକଟରେ ଅର୍ପଣ କରୁଛୁ।

ଆଜିର ଏହି ପବିତ୍ର ପ୍ରଥମ ଶ୍ରାଦ୍ଧବାର୍ଷିକର ଅବସରରେ ତୁମ ଅମ୍ଳାନ ଆତ୍ମାର ସଦ୍‌ଗତି ପାଇଁ ଅନ୍ତର୍ଯ୍ୟାମୀ ପ୍ରଭୁଙ୍କ ପାଦତଳେ ମୋର ବିନମ୍ର ନିବେଦନ । ତୁମର ମହାନତା ଆମକୁ ପ୍ରେରଣା ଯୋଗାଉଥାଉ।



# ପ୍ରସନ୍ନତାର ପ୍ରତୀକ ପ୍ରସନ୍ନ ଭାଇନା

*ମଞ୍ଜୁବାଳା ଦାସ*

ପ୍ରକୃତିର ନିୟମ ଅନୁସାରେ ଜୀବନ ଗତିର ଧାରା ଗଡି ଚାଲିଛି। କାଳର କରାଳ ସ୍ରୋତରେ ଭାସି ଯାଉଛନ୍ତି କେତେ ଆତ୍ମୀୟସ୍ବଜନ ବନ୍ଧୁ ପରିଜନ। ମୃତ୍ୟୁ ସତ୍ୟ ଜାଣି ମଧ୍ୟ ନିଜ ସଂପର୍କୀୟଙ୍କ ମୃତ୍ୟୁକୁ ବିଶ୍ୱାସ କରିହୁଏନି।

ମନ ହୃଦୟରେ ତାଙ୍କ ସ୍ମୃତି ସଦାସର୍ବଦା ଅନୁରଣିତ ହେଉଥାଏ। ପ୍ରସନ୍ନଭାଇନା ସୁଗୁଣ ଓ ବ୍ୟକ୍ତିତ୍ୱ ଦ୍ୱାରା ମୁଁ ଖୁବ ପ୍ରଭାବିତ। ପ୍ରସନ୍ନଭାଇନାଙ୍କ ସତ୍ୟଅପାଙ୍କ ମୋର ବ୍ୟକ୍ତିଗତ ସଂପର୍କ ନଥିଲେ ମଧ୍ୟ ଭାଗବତ ସଂପର୍କ ଖୁବ୍ ନିବିଡ । ୧୯୭୨ ମସିହା ରେଭେନ୍‌ସା ଲେଡିଜ୍ ହଷ୍ଟେଲରେ ଏକା ରୁମ୍‌ରେ ରହି ଆମର ସଂପର୍କ ଆରମ୍ଭ ହୋଇଥିଲା। ସତ୍ୟ ଅପା ସୁନ୍ଦର, ସର୍ବଗୁଣ ସମ୍ପନ୍ନା ତାଙ୍କ ସ୍ନେହମମତା, ମଧୁର କଥାରେ ମୋତେ ବାନ୍ଧି ଦେଇଥିଲେ। ତାଙ୍କ ବିବାହରେ ରମାଦେବୀ ହଷ୍ଟେଲକୁ ସ୍ୱାମୀ ପ୍ରସନ୍ନଭାଇନାଙ୍କ ସହ ସେ ମୋତେ ଦେଖାକରିବାକୁ ଯାଇଥିଲେ। ସେତେବେଳେ ଫୋନ୍ ନଥିଲା। ହଠାତ୍ ସେ ଦୁଇଜଣଙ୍କୁ ଦେଖି ମୁଁ ଯେକି ଆଶ୍ଚର୍ଯ୍ୟ ହୋଇଥିଲି ସେତିକି ଖୁସିରେ ଆତ୍ମହରା ହୋଇଥିଲି। ଭାଇନାଙ୍କ ସ୍ନେହପୂର୍ଣ୍ଣ ବ୍ୟବହାର ପାଇଁ ଖୁବ୍ ଖୁସି ହୋଇଗଲି। ମନେ ମନେ ଗଭବାନଙ୍କୁ ସ୍ମରଣ କଲି। ଯାହାହେଉ ସରଳ ସତ୍ୟଅପା ଜଣେ ଭଲ ମଣିଷଙ୍କୁ ସ୍ୱାମୀରୂପେ ପାଇଛନ୍ତି। ତାପରେ ଅନେକଥର ତାଙ୍କ ଘରକୁ ଯାଇଛି। ତାଙ୍କ ସହ ମିଶିବାର ସୌଭାଗ୍ୟ ପାଇଛି।

ପ୍ରସନ୍ନଭାଇନା ସଦାସର୍ବଦା ପ୍ରସନ୍ନ ରହି ତାଙ୍କ ପ୍ରସନ୍ନ ନାମକୁ ସାର୍ଥକ କରିଛନ୍ତି। ଭାଇନା କେବଳ ଇତିହାସର ପ୍ରଫେସର ନଥିଲେ ସେ ଥିଲେ ଜଣେ ସୁସାହିତ୍ୟିକ। ସେ ଆଦର୍ଶ ବ୍ୟକ୍ତିତ୍ୱ ସମ୍ପନ୍ନ ଭିନ୍ନ ମଣିଷ।

ସେ ଖୁବ୍ ସରଳ ଓ ତାଙ୍କ ହୃଦୟ ନିର୍ମଳ, ସାଗର ପରି ଇର୍ଷା ଦ୍ୱେଷ ରାଗ ଅହଂକାର ତାଙ୍କୁ ସ୍ପର୍ଶ କରିନଥିଲା। ବହୁତ ଜ୍ଞାନ ଗୁଣରେ ପରିପୂର୍ଣ୍ଣ ଥିଲେ ବି ସେ କେବେ ବିଜ୍ଞାପିତ ହେବାକୁ ଚାହିଁ ନାହାନ୍ତି। ସେ ନୀତିନିସ୍ଠ କର୍ତ୍ତବ୍ୟପରାୟଣ। ସେ କେବଳ ନିରବରେ ସେ ତାଙ୍କ କର୍ମ କରିଥାଆନ୍ତି । ସେ ଜଣେ ଆଦର୍ଶ ପୁତ୍ର, ଆଦର୍ଶ ପତି, ଆଦର୍ଶ ପିତା ଶିକ୍ଷକ ସର୍ବୋପରି ଆଦର୍ଶ ମଣିଷ। ସେ ସତ୍ୟ ଅପାଙ୍କର କେବଳ ସ୍ୱାମୀ ନଥିଲେ, ବଳିଷ୍ଠ ସହଯୋଗୀ, ଆଜିର ବାସ୍ତୁବାଦୀ ଦୁନିଆରେ ଏପରି ଦମ୍ପତି ବିରଳ। ଏମିତି ଆଦର୍ଶ ଦମ୍ପତି ଅପା ଭାଇନାଙ୍କ ସହ ମିଶିବାର ସୁଯୋଗ ମିଳିଥିବାରୁ ମୁଁ ନିଜକୁ ଭାଗ୍ୟବତୀ ମନେକରୁଥିଲି ଭାଇନାଙ୍କ ବିୟୋଗରେ ମୁଁ ଗଭୀର ଭାବରେ ମ୍ରିୟମାଣ ହୋଇପଡିଛି। ପ୍ରଭୁ ପାଖରେ ପ୍ରାର୍ଥନା କରେ। ସତ୍ୟଅପାଙ୍କୁ ସହାୟ ହୁଅ ଭାଇନାଙ୍କ ପରି ଜଣେ ଭଲ ମଣିଷଙ୍କୁ ହରାଇ ପରିବାର ଓ ପରିଜନ ଦୁଃଖରେ ଭାଙ୍ଗି ପଡିଛନ୍ତି। ଝୁରି ହେଉଛନ୍ତି ତାଙ୍କ ଗୁଣଗାନ। ତାଙ୍କର ଶୂନ୍ୟସ୍ଥାନ ଅପୂରଣୀୟ ରହିବ। ତାଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ପ୍ରଭୁଙ୍କ ପାଖରେ ତାଙ୍କ ଆତ୍ମାର ସଦ୍‌ଗତି କାମନା କରିବା ସହ ତାଙ୍କୁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି। କବିଙ୍କର ଏହି ପଦ୍ୟାଂଶଟି ପ୍ରସନ୍ନ ଭାଇନାଙ୍କ ପାଇଁ ପ୍ରାସଙ୍ଗିକ ହେବ-

**ମଣିଷ ମରିବ ଦିନେ**
**ଜନ୍ମ ହେଲେ ଦେବତା ବି ମରେ**
**ସାର୍ଥକ ଜନମ ତାଙ୍କ**
**ଯାହା ପାଇଁ ଗୋଡି-ମାଟି ଝୁରେ।**



# ସ୍ମୃତିରେ ପ୍ରସନ୍ନ ଭାଇନା

ତିଳୋତ୍ତମା ଦାଶ

ସଂସାର ରୂପକ ଏ ରଂଗ ମଞ୍ଚରେ
ଜନମନ୍ତି କେତେ ଜନ
କଳାକାର ସାଜି ଅଭିନୟ କରି
ବିତାଇ ଥାଆନ୍ତି ଦିନ
କାଳର ଗରଭେ କିଏ କେତେବେଳେ
କେଉଁଠି ଯାଆନ୍ତି ଲୁଚି
ତାହା ଜାଣିଥାନ୍ତି ସେ ବିଶ୍ୱନିୟନ୍ତା
ସେ ତ ସବୁ କରାଇଛି ।
ସମୟ ତ ଥିଲ ୨ ୨ ମସିହା
ଜୁନ୍ ମାସ ସତେଇଶ
ଜୀବନ ପ୍ରଦୀପ ଲିଭିଯାଇଥିଲ
ଜଞ୍ଜାଳ ହୋଇଲା ଶେଷ
ସେ ସମୟ ଅଟେ ବଡ଼ ଦାରୁଣ ଯେ
ନ ଜାଣଇ ଦୁଃଖ ସୁଖ ।
ଅସମୟେ ଆସି ହୁଏ ଉପସ୍ଥିତି
ଜାଣି ନ ପାରଇ ଦୁଃଖ
ଯେଉଁଠାକୁ ଚାଲି ଗଲ ହେ ଭାଇନା
ଥଳ କୂଳ ପାଏ ନାହିଁ
ଅଦୃଶ୍ୟ ରାଇଜେ ଲୁଚିଗଲ ତୁମେ
ସ୍ମୃତି ତୁମ ଅଛି ରହି
ଦୁଃଖ ସୁଖ ଭରା ସଂସାର ତୁମର
ନିମିଷେ ଉଜୁଡ଼ି ଗଲା
ସବୁଦିନ ପାଇଁ ନାନୀ ମୋ କାଳର
ତା ସୁଖ ଶାନ୍ତି ସରିଲା ।

ତୁମ ବିନା ତାଙ୍କୁ ସବୁ ତୁଚ୍ଛଲାଗେ
କେ ବୁଝିବ ତାଙ୍କ ମନ
ବିପଦ କାଳରେ ସାହା କିଏ ହେବ
କିପରି କାଟିବେ ଦିନ ।
ସୁଖି ପରିବାର ଗଢିଥିଲ ତୁମେ
ସମସ୍ତଙ୍କୁ ସ୍ନେହ କରି
ସୁଖ ସରିଗଲା ତୁମେ ଚାଲିଗଲ
ସମସ୍ତେ ହୁଅନ୍ତି ଝୁରି
କେଉଁ ଅଭିମାନେ ଶୋଇଗଲ ତୁମେ
କି ହୋଇଲା ତୁମ ଊଣା
ମନ କଥା ମନେ ରଖିଲ ଭାଇନା
କାହାକୁ ହେଲାନି ଜଣା
ଭାଇପରି ସଦା କରୁଥିଲ ସ୍ନେହ
କିପରି ପାରିବି ଭୁଲି
ଜୀବନର ଶେଷ ବିଦାୟ ପର୍ଯ୍ୟନ୍ତ
ସ୍ମୃତିରେ ସଦା ରଖିବି ।
ବିଧାତାର ଖେଳ ବିଚିତ୍ର ଅଟଇ
କିଏ ସେ ବୁଝିପାରିବ
ଖେଳ ସରିଗଲା ପାଶେ ନେଇଗଲା
ତୁମ ସଙ୍ଗେ କଲା ଭାବ ।
ଅମର ଆତ୍ମାର ସଦ୍‌ଗତି କରନ୍ତୁ
ପାପ କ୍ଷୟ ହୋଇଯାଉ ।
ଆଶୀଷ ଟିକିଏ କରୁଥିବ ସଦା
ପରିବାର ସୁଖେ ରହୁ ।



# ହେ ପୂଜ୍ୟ ଆତ୍ମନ୍ ମୋର ସଭକ୍ତି ପ୍ରଣାମ।

*ତିଳୋତ୍ତମା ଦାଶ*

ଆପଣଙ୍କ ବିଷୟରେ କ'ଣ ଲେଖିବି ମୁଁ ଭାଷା ପାଉନି। ଆପଣଙ୍କ ସହିତ କଟାଇଥିବା କେତେକ ମୁହୂର୍ତ୍ତ ଯାହା ମୋର ହୃଦୟରେ ବସା ବାନ୍ଧି ଯାଇଛି ଚାହିଁଲେ ବି ଭୂଲି ପାରୁନି। ୧୯୮୨ ମସିହାରେ ମୁଁ ଭୁବନେଶ୍ୱର ଆସିଲି ପାଠ ପଢ଼ିବା ପାଇଁ। ସେବେଠାରୁ ମୁଁ ଆପଣଙ୍କୁ ଜାଣେ, ଆପଣଙ୍କର ସେହି ଶାନ୍ତ ଓ ହସ ହସ ମୁହଁଟି ମୋ ଆଖି ଆଗରେ ନାଚି ଉଠୁଛି। ଆପଣ ମୋର ସମ୍ପର୍କରେ ଜ୍ୱାଇଁ ହେଲେ ବୟସରେ ବଡ଼ । ତେଣୁ ମୁଁ ଭାଇନା ଡାକେ। ମୁଁ ଆପଣଙ୍କ ଘରକୁ ଯାଏ ମୋ ହାତ ଉଠିଯାଏ । ମୁଁ ଆପଣଙ୍କୁ ନମସ୍କାର କଲେ ସଙ୍ଗେ ସଙ୍ଗେ ଆପଣ କୁହନ୍ତି "ତୋତେ ପରା ମନା କରିଥିଲି ତୁ ନମସ୍କାର କରିବୁନି। ମୁଁ କିଛି କହିପାରେନା ହସିଦିଏ। ସତ୍ୟନାନୀ ସହିତ ମୁଁ ବହୁ ମିଶେ। ଯେତେବେଳେ ସମୟ ମିଳେ ଚାଲିଯାଏ ଆପଣଙ୍କ ଘରକୁ। ଆପଣଙ୍କ ମୁଣ୍ଡ ଉପରେ ଥିଲା କେତେଜଣଙ୍କର ଦାୟିତ୍ୱ। ଆପଣଙ୍କ ସାନଭାଇ, ସାନ ଶଳା ଓ ପିଲାମାନଙ୍କର ତତ୍ ସହିତ ଶାଶୁ ମଧ୍ୟ ଥିଲେ। ଯାହା ମୁଁ ଅନୁଭବ କରିଛି ତାହାହିଁ ଲେଖୁଛି। ସତରେ ଭାଇନା ଏତେ ବୋଝ ମୁଣ୍ଡେଇଲେ ମଧ୍ୟ ଆପଣ ବିରକ୍ତି ହୁଅନ୍ତି ନାହିଁ ସେଇଟା ଥିଲା ଆପଣଙ୍କ ମହନୀୟତା। ଚାକିରୀ ପରେ ଆପଣ ମୋ ନାନୀ ସହିତ ଖୁସୀରେ ଥିଲେ। ମୋ ନାନୀକୁ ଆପଣ ବହୁତ ଭଲ ପାଉଥିଲେ। ମୋର ଗୋଟେ ଦିନର କଥା ମନେ ଅଛି ମୁଁ ଆପଣଙ୍କ ଘରକୁ ଯାଇଥାଏ ସେବତୀନାନୀ (ଆପଣଙ୍କ ଶାଶୁ) ଚା' କରି ମୋତେ ଦେଲା ମୁଁ ଆପଣଙ୍କୁ ଦେବାକୁ କହିଲି ସେ ମୋ ହାତରେ ଚା କପ୍‌ଟା ବଢ଼ାଇଦେଲା ହେଲେ ସେଦିନ ଆପଣ କହିଲେ "ସତ୍ୟଭାମା ଆସୁ ମୁଁ ପରେ ପିଇବି।" ମୁଁ କପ୍‌ଟା ଫେରାଇ ଆଣି ନାନୀକୁ ଦେଲି ସେ ହସିଲା କହିଲା ସତିଆ ନ' ଆସିବା ଯାଏ ସେ କେବେ ପିଇବେନି। ସତରେ ମୋ ନାନୀକୁ ଠକିଦେଇ ଚାଲିଗଲ ଭାଇନା। ଯେଉଁଠି ବି ଥାଅ ତା ପ୍ରତି ଶୁଭ ଦୃଷ୍ଟି ରଖିଥାଅ ଓ ଆର ଜନମରେ ପୁଣି ତା ସାଥୀ ହୋଇ ଜନ୍ମହୁଅ।



# ପ୍ରସନ୍ନ ମିଶ୍ରଙ୍କ ଅମ୍ଳାନ ବ୍ୟକ୍ତିତ୍ୱ ପାଇଁ ଏକ ଶ୍ରଦ୍ଧାଞ୍ଜଳି

*ପ୍ରେମ ମଞ୍ଜରୀ ନାୟକ*

ପ୍ରସନ୍ନ ବାବୁ ମୋ ପାଇଁ ଏକ ବିଶ୍ୱାସ ଓ ଏକ ଆତ୍ମପ୍ରତ୍ୟୟର ବ୍ୟକ୍ତିତ୍ୱ। ମୁଁ ତାଙ୍କୁ ପ୍ରଥମେ ମୋର ସାଙ୍ଗ ସତ୍ୟର ଶିକ୍ଷକ ହିସାବରେ ଅଳ୍ପ ଜାଣିଥିଲି। ହେଲେ କେବେ ଦେଖା ହୋଇନଥିଲା। ହଠାତ୍ ଦିନେ ବାଣୀବିହାର ଲେଡ଼ିଜ ହଷ୍ଟେଲର ପରିଚାରିକା ମୋତେ ଖବର ଦେଲା କି ପ୍ରସନ୍ନ ସାର୍ ଆପଣଙ୍କୁ ଅପେକ୍ଷା ଗୃହରେ ସାକ୍ଷାତ୍ ପାଇଁ ଡାକୁଛନ୍ତି। ମୁଁ ବହୁତ ସନ୍ତର୍ପଣରେ ତାଙ୍କ ପାଖକୁ ଦେଖା କରିବାକୁ ଗଲି। ସେ ତାଙ୍କର ଅମାୟିକପଣରେ ମତେ ସ୍ୱାଗତ କଲେ ଓ ମୋ ସହିତ କିଛି କଥା ହେବାକୁ ଇଚ୍ଛାପ୍ରକଟ କଲେ। ସେ ଜଣେ ଅଭିଜ୍ଞ ବ୍ୟକ୍ତି। ମୁଁ ସେତେବେଳେ ତାଙ୍କ ଆଗରେ ଛାତ୍ରୀ ମାତ୍ର। ଭୟ ଲାଗୁଥାଏ, ତଥାପି ସାହାସ କରିପଚାରିଲି, "ସାର, କଣ ମୋ ପାଖରେ କିଛି କଥା ଅଛି ?" ସେ କହିଲେ, "ମୋ ଜୀବନର ଏକ ବଡ଼ ନିଷ୍ପତ୍ତି ତୁମ ପାଖରେ ଅଟକିଛି। ସତ୍ୟ ତୁମର ଭଲ ସାଙ୍ଗ। ସେ ମୋତେ ଏଠାକୁ ପଠାଇଛି ତୁମର ସହମତି ପାଇଁ, କାରଣ ମୁଁ ତାକୁ ବିବାହ କରିବାକୁ ଚାହୁଁଛି।" ସତ୍ୟ ମୋର ରେଭେନ୍ସା କଲେଜରେ ପ୍ରିୟୁନିଭରସିଟି ପଢିଲା ବେଳଠୁ ଏତେ ଘନିଷ୍ଠ ହୋଇଯାଇଥିଲା ଯେ ଆମେ ପ୍ରାୟ ଦୁହେଁ ଦୁଇ ଭଉଣୀ ପରି ଚଳୁଥିଲୁ। ତା'ର ପରିବାର ଓ ମୋ ପରିବାର ଉଭୟଙ୍କୁ ଝିଅ ପରି ଦେଖୁଥିଲେ। ବନ୍ଧୁତ୍ୱ ଅତି ନିବିଡ଼ ଥିଲା। ଏପରି ପ୍ରସ୍ତାବ ପ୍ରସନ୍ନ ବାବୁଙ୍କ ଠାରୁ ଶୁଣି ମୁଁ ଟିକେ ବିଚଳିତ ହେଲି। ତଥାପି ସାହାସ ଜୁଟାଇ କଥାକୁ ଆଗେଇ ନେଲି। ତାଙ୍କର ଅମାୟିକ ବ୍ୟବହାର ଓ ବ୍ୟକ୍ତିତ୍ୱ ପାଇଁ ମନେମନେ ଖୁସି ହେଉଥିଲି। ତା'ପରେ ସତ୍ୟର ପାରିବାରିକ ଅସହାୟତା ତାଙ୍କୁ ଜଣାଇଲି। ଅନେକ କିଛି କଥା ହେଲୁ ଯାହା ଲେଖିଲେ ବହୁତ ହେବ। ସେ ମୋର ସବୁ କଥାକୁ ଆଗ୍ରହ ସହକାରେ ଶୁଣି ସହମତି ପ୍ରକାଶ କଲେ ଓ ସତ୍ୟ ସହିତ ବିବାହ ପାଇଁ ମୋତେ ଏକ ପ୍ରକାର ରାଜି କରାଇଲେ। ମୁଁ ମଧ୍ୟ ତାଙ୍କ ବ୍ୟବହାର ଓ କଥାରେ ବିମୋହିତ ହୋଇ କଥାକୁ ଆଗକୁ ନେବାକୁ ଅନୁରୋଧ କଲି। ଏତେ ବଡ଼ ଲୋକ ମୋ ଭଳି ଜଣେ ସାମାନ୍ୟ ସାଙ୍ଗକୁ ସେ ଯେ ଏତେ ଗୁରୁତ୍ୱ ଦେବେ ମୁଁ ବିଶ୍ୱାସ କରିପାରୁ ନଥିଲି। ହେଲେ ସେ ବିଶ୍ୱାସ ତାଙ୍କ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ପରସ୍ପର ପ୍ରତି ରହିଥିଲା। ଦୀର୍ଘ ବର୍ଷଧରି ଆମ ବନ୍ଧୁତ୍ୱ ସେମିତି ଅତୁଟ ରହିଥିଲା। ଆମ ଘରର ଭଲମନ୍ଦରେ ପ୍ରସନ୍ନବାବୁ ଉପସ୍ଥିତ ହେଉଥିଲେ। ମୋ ଭାଇମାନେ ଓ ଭଉଣୀ ତାଙ୍କୁ ତାଙ୍କର ଭିଣୋଇ ହିସାବରେ ଗ୍ରହଣ କରନ୍ତି। ଆଜି ତାଙ୍କ ଆବର୍ତ୍ତମାନରେ ମୁଁ କ'ଣ ଅନୁଭବ କରୁଛି ତାହା ଅବ୍ୟକ୍ତ। ସେ ମୋ ପାଇଁ ଏକ ଆତ୍ମୀୟ ପରି।ଯେଉଁଠି ମୋତେ ଦେଖୁଥିଲେ ବହୁତ ଖୁସି ହେଉଥିଲେ ଏବଂ ସମସ୍ତଙ୍କୁ କହୁଥିଲେ, "ପ୍ରେମ ମୋର ବିବାହ କରାଇଛି। ସମସ୍ତଙ୍କ ଆଗରେ ମୋର ବହୁତ ପ୍ରଶଂସା କରୁଥିଲେ।

ପ୍ରସନ୍ନ ବାବୁ ଓ ମୋ ଭିତରେ ଆକାଶ ପାତାଳର ତଫାତ୍। ତାଙ୍କପରି ଗୁଣୀ, ଜ୍ଞାନୀ ପ୍ରଫେସର ମୋର ଅନ୍ତରଙ୍ଗ ଭାବିଲା ବେଳକୁ ନିଜକୁ ଗର୍ବ ଲାଗେ। ଆମେ ଦୁହେଁ ବାହ୍ୟ ସମାଜଠାରୁ ଉର୍ଦ୍ଧ୍ୱରେ। କାହାଠୁ କେହି କିଛି ପାଇବାର ଆକାଂକ୍ଷା ନରଖି ସମ୍ପର୍କକୁ ଆଗେଇ ନେଇଥିଲୁ। ଆମ ସମ୍ପର୍କ ଭାଇଭଉଣୀର ଓ ଏକ ଭଲ ବନ୍ଧୁତ୍ୱର। ସେ ଆଜି ନାହାନ୍ତି, ଏକଥା ମୁଁ ବିଶ୍ୱାସ କରିପାରୁନି। ତାଙ୍କର ସ୍ନେହପୂର୍ଣ୍ଣ ସମ୍ବୋଧନ ମୋ କାନରେ ଏବେବି ବାଜୁଛି, ହେଲେ ବିଧିର ବିଧାନକୁ ଆମକୁ ଗ୍ରହଣ କରିବାକୁ ହେବ।

ତାଙ୍କ ଅମର ଆତ୍ମାର ସଦ୍‌ଗତି ପାଇଁ ଠାକୁରଙ୍କୁ ପ୍ରାର୍ଥନା କରିରହୁଛି।

ଆପଣଙ୍କ ସ୍ନେହାଧୀନା ପ୍ରେମବାବୁ



# PRASANNA IN MY MEMORY

***S.K. Mishra,***
*Retired Professor of Psychology*
*Ex-vice-Chancellor, Utkal University*

Late Prasanna Kumar Mishra was known to me since he entered Utkal University as a Research Scholar. He was closely associated with me and called me Bhaina. He did his Ph.D under Prof. K.M. Patra, close friend of mine. He was a very meek and mild person. He was an excellent researcher. He retired as a reader in History. His death was a great shock to me and to my family. I pay my respect to such a soul.

# ପ୍ରସନ୍ନ ଭାଇନା ଓ ମୋ ସମ୍ପର୍କ କେତେ ଦୂର ଆଉ କେତେପାଖ

*ଶ୍ରୀ କୃଷ୍ଣ କୁମାର ମିଶ୍ର* (ମଣ୍ଟୁ)

ପ୍ରସନ୍ନ ଭାଇନା ମୋ ନିଜ ଭାଇ ନଥିଲେ। ସେ ହେଉଛନ୍ତି ମୋ ବଡ ମାଇଁଙ୍କ ଭଉଣୀ ସାରିଆ ମାଉସୀଙ୍କ ପୁଅ। କିନ୍ତୁ ଅଳ୍ପଦିନର ପରିଚୟ ଭିତରେ ତାଙ୍କର ମୋର ସମ୍ପର୍କ ଏତେ ନିବିଡ ହୋଇଗଲା ଯେ ସେ ନିଜ ଭାଇ ଠାରୁ ବି ଅଧିକ ପ୍ରିୟ ହୋଇଗଲେ । ଯେହେତୁ ତାଙ୍କ ମୋ ଭିତରେ ବୟସର ତାରତମ୍ୟ ବେଶୀ ଅଧିକ ନଥିଲା, ଆମେ ଦୁଇ ବନ୍ଧୁ ବି ପାଲଟି ଗଲୁ। ଆମେ ସାଙ୍ଗ ଭଳି ସବୁକଥା ଖୋଲା ଖୋଲି ଆମ ଭିତରେ ସେୟାର କରୁ। ଆମେ ଦୁଇ ଜଣଙ୍କର ଦୁଇଟା ସାଇକେଲ ଥିଲା। ଆମ କାମ ହେଲା ବାଣୀବିହାରରୁ ଭୁବନେଶ୍ୱର, ପୁରୁଣା ଭୁବନେଶ୍ୱର, ସାଇକେଲରେ ଦିନକୁ ତିନି ଚାରି ଥର ଅନ୍ତତଃ ଚକର କାଟିବା। ପୁରୁଣା ଭୁବନେଶ୍ୱର ରୁପମନ୍ଦିର ସିନେମା ହଲରୁ ଆରମ୍ଭ କରି ରବିଟକିଜ। କଳ୍ପନା ସିନେମା ହଲ, ଶ୍ରୀୟା... ବାସ ସେତେବେଳେ ସେତିକି ସିନେମା ହଲ ହିଁ ଭୁବନେଶ୍ୱରରେ ଥିଲା। ମ୍ୟାଟିନ ସୋରୁ ଆରମ୍ଭ କରି ଇଭନିଙ୍ଗ... ନାଇଟ ଯେଉଁଠି ଭଲ ସିନେମା ପଡିଥିବ ଆମ ମନ ପସନ୍ଦର ହିରୋ ହିରୋଇନ ଥିବେ। ବୁଲି ବୁଲି ସିନେମା ଦେଖିବା ଥିଲା ଆମର ପ୍ରଥମ କାମ। ଚିତ୍ତବାବୁ, ବୁଟୁ ଓ ଭଣଜା ଗୁଲୁ ଆମ ଦିଜଣଙ୍କର ଅତିପ୍ରିୟ ଥିଲେ। ସେମାନେ ବି ଆମ ଦୁଇଜଣଙ୍କୁ ବହୁତ ଭଲ ପାଉଥିଲେ। ଗୁଲୁ ବି ଛୁଆ ବେଳୁ ବହୁତ ଦୁଷ୍ଟ ଥିଲା। ତା ପାଇଁ ଅମୁଲ ଦରକାର ପଡେ। ଅମୁଲ ସେତେବେଳେକୁ ବହୁତ କଟକଣା କୁ, ଟୁଟୁ ଓ ଚିତ୍ତବାବୁ କାଳିଆ ପାଣିରେ ରହୁଥିଲେ। ଚିତ୍ତବାବୁ କାଳିଆପାଣି କ୍ରୋମାଇଟ୍‌ମାଇନ୍‌ର ଜେନେରାଲ ମ୍ୟାନେଜର ଥିଲେ। ନିପଟ ଜଙ୍ଗଲ। ମାଇନିଂ କର୍ପୋରେସନର ନିର୍ମିତ କଲୋନୀ ଓ ଅସ୍ଥାୟୀ କିଛି ଘର ବ୍ୟତୀତ ଆଉ କିଛି ସୁବିଧା ନାହିଁ। ଅମୁଲ ଅବା ସେମାନେ କେଉଁଠୁ ପାଇବେ ? ତେଣୁ ପ୍ରସନ୍ନ ଭାଇନା ଓ ମୋର ମୁଖ୍ୟ କାମ ହେଲା ବୁଲି ବୁଲି ଏ ଦୋକାନରୁ ସେ ଦୋକାନ ଗୁଲୁ ପାଇଁ ଅମୁଲ ଡବା ଠୁଳ କରିବା। ସେତେବେଳେ ମାଷ୍ଟର କ୍ୟାଣ୍ଟିନରେ ଥିବା ଲାଲଚାନ୍ଦରେ ଆମେ ଲାଇନରେ ଠିଆ ହେଉ। ବୁନାନିର ଜଣେ ଦୁଇଜଣ ଝିଅ ଆସି ଆମ ସଂଗେ ଲାଇନରେ ଠିଆ ହୋଇ ଅମୁଲ ସଂଗ୍ରହରେ ସହଯୋଗ କରନ୍ତି। ବୁନାନି ପ୍ରଥମେ ତିନି ନମ୍ବର ପାର୍କ ପାଖ ଏକ କ୍ୱାଟରରେ ରହୁଥିଲା। ବୁନାନିର ଦୁଇ ଝିଅଙ୍କ ପାଠ ପଢା ଦେଖା ଚାହାଁ ପାଇଁ ବୁନାନି ଜଣେ ଶିକ୍ଷକ ଖୋଜୁଥିଲେ। ପ୍ରସନ୍ନ ଭାଇନା ସେତେବେଳକୁ ଇତିହାସରେ ଏମ.ଏ ପାସ କଲାପରେ ପି.ଏଚ.ଡି କରି ଉତ୍କଳ ବିଶ୍ୱବିଦ୍ୟାଳୟରେ ଡେମୋନଷ୍ଟେଟର ଚାକିରୀ ପାଇଲେ। ପରବର୍ତ୍ତୀ କାଳରେ ଅଧାପକ ବି ହୋଇ ଗଲେ। ବୁନାନି ଓ ତାର ସବୁ ପିଲା ମୋର ମଧ୍ୟ ଅତିପ୍ରିୟ ଥିଲେ। ସେମାନେ ବି ମାମୁଁ ମାମୁଁ ବୋଲି ପାଣି ପିଉନଥିଲେ। ତେଣୁ ମୋର ଅଧିକାଂଶ ସମୟ ବୁନାନି ଘରେ ହିଁ କଟିଛି। ବୁନାନି ବି ସିନେମା ଦେଖବାକୁ ବହୁତ ଭଲପାଏ। ଘରେ ସକାଳୁ ସଞ୍ଜଯାଏ ସେ ଗଧ ଭଳି ଖଟି ତା ପିଲା ମାନଙ୍କୁ ମଣିଷ ଭଳିଆ ମଣିଷ କରିଛି। ବାସୁବାବୁ ବିଏ.ଏଲ.ଏଲ.ବି. ହେଲେ ବି ସେତେବେଳେ ସରକାରୀ ଚାକିରୀରେ ଦରମା କମ ଥିଲା। ଲାଞ୍ଚ ଖାଇଥିଲେ ଭଲ ଦୁଇ ପଇସା ହୋଇଥାନ୍ତା। କିନ୍ତୁ ଏତେ ଅଭାବରେ ଥାଇ ବି ସେ ଲାଞ୍ଚ ନେବାକୁ ପସନ୍ଦ କରନ୍ତି ନାହିଁ। ବୋଧ ହୁଏ ତାଙ୍କ ସାଧୁତା ଓ ବୁନାନି ର ଶ୍ରମ ଓ ନିଷ୍ଠା ପିଲା ମାନଙ୍କୁ ଉଚ୍ଚ ଶିକ୍ଷିତ କରିବା ଓ ଭଲ ଜାଗାରେ ବାହା ଦେବାରେ ସହାୟକ ହୋଇଥିଲା। ବୁନାନି ପିଲାମାନେ ବଡ ହେବାରୁ ତାର ବଡ ଘର ଆବଶ୍ୟକ ହେଲା। ପଡିଶା ଘର ସହ ତାର ଭଲ ସମ୍ପର୍କ ବି ନଥିଲା କାମାକ୍ଷାନଗରର ବୃନ୍ଦାବନ ତ୍ରିପାଠୀ ମନ୍ତ୍ରୀ ଥିଲେ। ପବିତ୍ର ପ୍ରଧାନ ଉପ ମୁଖ୍ୟମନ୍ତ୍ରୀ ଥିଲେ। ଶରତ ଭାଇନା ଓ ରାଜ କକେଇଙ୍କର ସେମାନେ ଅନ୍ତରଙ୍ଗ ଥିଲେ। ତେଣୁ ସେମାନଙ୍କୁ ଭେଟି ମୁଁ ବୁନାନି ପାଇଁ ଦୁଇ ନମ୍ବରରେ ବଡ କ୍ୱାଟରଟେ

କରାଇବାରେ ସକ୍ଷମ ହୋଇଥିଲି। ପ୍ରସନ୍ନ ଭାଇନା ବୁନାନି ଘରେ ପ୍ରାୟ ଅଧିକାଂଶ ସମୟ ଖିଆ ପିଆ କରନ୍ତି। ବୁନାନୀ ବି ଏତେ ସ୍ନେହୀ ଯେ, ଯେତେ ଅଭାବରେ ଥିଲେ ବି ସେ ସବୁ ବେଳେ ହସୁଥାଏ। ଅନ୍ୟକୁ ହସାଏ। କାହାକୁ ଖାଇବାକୁ ନଦେଇ ଛାଡିବନି। ମୁଁ ବାସୁବାବୁ, ପ୍ରସନ୍ନ ଭାଇନା ବୁନାନୀ ବଡ ଜ୍ୱାଇଁ ଶରତ ଓ ବୁନାନି ଭଣଜା ବସନ୍ତ ଆମ କାମ ହେଲା ସନ୍ଧ୍ୟା ଯାଏ ବାସୁବାବୁ ହାଟକୁ ଯିବା ପର୍ଯ୍ୟନ୍ତ ତାସ ଖେଳିବା। ବୁନାନୀ ବି ଆମକୁ ଉତ୍ସାହିତ କରେ। ଥରକୁ ଥର ଚା କରି ଦେବ, ପକୁଡି ଛାଣି ଦେଉଥିବ। ଆମେ ତାସଖେଳୁଥିବୁ। ତେଣୁ ପ୍ରସନ୍ନ ଭାଇନାଙ୍କ ସହ ନିବିଡତା ବଢିବାରେ ବୁନାନିଘର ବି ଆଉ ଏକ ମାଧ୍ୟମ ଥିଲା। ପ୍ରସନ୍ନ ଭାଇନାଙ୍କୁ ବାଣୀ ବିହାରରେ ଯେତେବେଳେ ଗୋଟେ ଫ୍ଲାଟ ମିଳିଲା, ମୁଁ କାଳିଆ ଭାଇନାଙ୍କ ଘର ଛାଡି ଆସି ପ୍ରସନ୍ନ ଭାଇନାଙ୍କ ପାଖେ ରହିଲି। କାରଣ ସିନେମା ଦେଖି ଯେତେ ରାତିରେ ଫେରିଲେ ଆଉ କବାଟ ଖୋଲିବାକୁ କାହାକୁ ଡାକିବାକୁ ପଡିବ ନାହିଁ କି ଫାଟକ ଡେଇଁବାକୁ ପଡିବ ନାହିଁ। ପ୍ରସନ୍ନ ଭାଇନା ଓ ମୁଁ କିଛିଦିନ ଯାଏ କାଳିଆପଣିରେ ଚିତ୍ତ ବାବୁ ଓ ଟୁଟୁ ପାଖେ ରହିଲୁ। ଗୁଲୁ ବି ଛୋଟ ଟିଏ ହୋଇଥାଏ। ବାବୁଙ୍କ ଶଳାମାନେ ଆସିଛନ୍ତି ବୋଲି ଖୁସିରେ ସଦାଶିବ ଏମିତି ଗରିଷ୍ଠ ଖାଦ୍ୟ ଖାଇବାକୁ ଦିଏ ଯେ, ଆମେ ଲୋଭରେ ସିନା ଖାଇଦେଉ କିନ୍ତୁ ପେଟ ଟାଣି ଧରେ। ସିଧା ଚାଲି ପାରୁନା। ପେଟ କୁ ଧରି ନଇଁ ନଇଁ ଚାଲୁ। ସେଠାରେ କବିବାବୁ ଓ ଟୁକୁ ନାନୀ ସହ ମଧ୍ୟ ଆମର ପରିଚୟ ହୋଇଥିଲା। ଯଦିଓ ମୋର ଠିକ ମନେ ନାହିଁ ବୋଧ ହୁଏ ପ୍ରସନ୍ନ ଭାଇନାଙ୍କ ପାଖେ ଥିବା ଭିତରେ ମୁଁ ଆଚାର୍ଯ୍ୟ ବିହାରରେ ଗାଈ ଓ କୁକୁଡା ଫାର୍ମ କରି ସାରିଥିଲି। କାରଣ ଖାଲି କ୍ଷୀରରେ ଆମେ ଆଦୌ ପାଣି ନମିଶାଇ ଚା କରି ପିଉ। ଅଣ୍ଡାକୁ ଚକୁଳି କରି ଖାଉ। ଏକ ବିଶେଷ ପରିସ୍ଥିତିରେ ସତ୍ୟଭାମା ଭାଉଜଙ୍କ ସହ ପ୍ରସନ୍ନ ଭାଇନାଙ୍କ ବାହାଘର ତୁରନ୍ତ ଆୟୋଜନ କରିବା ଆବଶ୍ୟକ ପଡିଲା। ସେ ଆୟୋଜନ ମୁଁ ଆଚାର୍ଯ୍ୟ ବିହାରର ଏକ କ୍ୱାଟରରେ ବ୍ୟବସ୍ଥା କରିଥିଲି। ସେଠିକି ମୋ ଭାଇ, ଭଉଣୀ, ଭିଣେଇ ମାନେ ଯାଇ ସମ୍ପୂର୍ଣ୍ଣ ସହଯୋଗ କରିଥିଲେ। ପ୍ରସନ୍ନ ଭାଇନାଙ୍କ ବାହାଘର ପରେ ମୁଁ ତାଙ୍କ ଫ୍ଲାଟ ଛାଡି ପ୍ରଥମେ ବୁନାନି ଘରେ ଓ ପରେ ଟୁଟୁ ଘରେ ରହି ଫାର୍ମ ଯିବା ଆସିବା କରୁଥିଲି। ତାପରେ ମୁଁ ଢେଙ୍କାନାଳ ଯାଇ ପ୍ରଥମେ କୁକୁଡା ଖାଦ୍ୟ ଓ ଗୋଖାଦ୍ୟ ଦୋକାନ ଆରମ୍ଭ କରିଥିଲି। ତାପରେ ମୋ ଭାଗ୍ୟରେ ବିପର୍ଯ୍ୟୟ ଦେଖାଦେଲା। ଭୀଷଣ ପ୍ରତିକୂଳ ପରିସ୍ଥିତି ଦେଇ ମୋତେ ଗତି କରିବାକୁ ପଡିଥିଲା। ଯେଉଁମାନେ ମୋତେ ଦିନେ ଭଲ ପାଉଥିଲେ ଧୀରେ ଧୀରେ ଦୁରେଇଗଲେ। ଅନେକ ଶତ୍ରୁ ଭଳିଆ ଆଚରଣ କଲେ। ଆର୍ଥିକ ପରିସ୍ଥିତି ଭଲ ରହିଲା ନାହିଁ। ବୋଉ ମଲା ପରେ ମୋ ଦୁର୍ଦ୍ଦଶା ଆହୁରି ବଢିଗଲା। ମୁଁ ଏକ ପ୍ରକାର ଡିପ୍ରେସନକୁ ଚାଲିଯାଇଥିଲି କହିଲେ ଚଳେ। ପ୍ରସନ୍ନ ଭାଇନା ଓ ଭାଉଜ କିନ୍ତୁ ମୋ ସଂଗେ ସମ୍ପର୍କ ରଖିଥିଲେ। ମୁଁ ତାଙ୍କ ପାଖକୁ କିନ୍ତୁ ଆସି ପାରୁ ନଥିଲି। ଥରେ କେବଳ ତାଙ୍କ "ନ" ନମ୍ବର କ୍ୱାଟରକୁ ଆମେ ଯାଇଥିଲୁ। ତାପରେ ୨୦୧୯ରେ ମୋର ଅପରେସନ ପାଇଁ କୁକନ ଭାଇନା ଘରେ ଆଚାର୍ଯ୍ୟ ବିହାରରେ ଥିଲି। ପ୍ରସନ୍ନ ଭାଇନା ସେଇଠିକି ଆସିଥିଲେ ସେତିକି ଯାହା ତାଙ୍କ ସାଙ୍ଗେ ଦେଖା। କିଏ ଜାଣିଥିଲା ସେଇଟା ଥିଲା ତାଙ୍କ ସହ ମୋ ଜୀବନର ଶେଷ ଦେଖା। ଯାହା ହେଉ ସାଇବାବାଙ୍କ ଆଶୀର୍ବାଦରୁ ଦୁଇ ହଜାର ମସିହା ପରେ ମୋର ପରିସ୍ଥିତି କିଛିଟା ପୁଣି ସୁଧୁରିଛି। କିନ୍ତୁ ମୋର ପ୍ରିୟଲୋକ ଗୁଡା, ସାଙ୍ଗ, ସାଥି ସବୁ ଗୋଟିକ ପରେ ଗୋଟିଏ ଚାଲି ଯାଉଛନ୍ତି। ମୁଁ ଓ ଜ୍ୟୋତ୍ସ୍ନା ଆମ ଭବିଷ୍ୟତ କେବଳ ଭଗବାନଙ୍କ ଉପରେ ଛାଡି ଦେଇଛୁ। ଭଗବାନ କରନ୍ତୁ, ଘୋଷାରି ନହୋଇ ପ୍ରସନ୍ନ ଭାଇନାଙ୍କ ଭଳି କେବଳ ସୁଖ ମରଣ ମିଳୁ।



# MY DEAR BIG BRO

**Dr. Amiya Kumar Ratha**
Retd. Associate Professor of History

Chapter 1: The Association

Dr. Prasanna Kumar Mishra was my cousin, my "big bro" and was 16 years older than me. I am a native of Athagarh town in the Athagarh Sub Division of the district of Cuttack and he hailed from Tigiria in the same Athagarh Sub Division of Cuttack district about 14 kms away from my home. He was the nephew of my Dadei (Badabapa). He used to visit Athagarh at times and on one of these occasions as I happen to remember when I was in standard IV, he appeared before me, a handsome young man. I was deeply engrossed in my studies as I mostly was in those rewarding days when I used to excel in school. I used to be the top performer by the way.

I found him sweet and lovable as he patted my back and said "I hear you are great at your studies and secure first position in your class!" I nodded shyly. I wondered who this young man was showering praises and love. I did not however dare to check his identity till he left our home that day. After he left I enquired about him with my Dethei(Badamaa) in detail. She told me that he was her nephew, her elder sister's son, Prasanna. I came to know that Prasanna Bhaina was doing his research in History at the Utkal University, Vanivihar, Bhubaneswar. After that first meeting I used to pester him about many things in his subsequent visits but mostly about his academic achievements. He would smile and reply "Little boy, I am not brilliant as you. I am pursuing my studies somehow."

I stood askance, how such a wise man could be struggling in his studies. Years rolled on and I passed my matriculation with flying colors before enrolling into the prestigious Ravenshaw College in Cuttack. I graduated with Honours in History successfully before moving on to Utkal University to pursue my post graduation in 1978 by which time Prasanna Bhaina was much familiar to me.

**Chapter 2: Life at Vanivihar**

Prasanna Bhaina was a Research Associate at time I enrolled for my post graduation. He was married by that time and his first child, Raja was about one and half years old. Satyabhama Bhauja was a very loving and caring person. It was she who helped me get rid of my shyness. His second son, Chunnu, was born in 1979 when I was in the final year of my post graduation. Both my "Bro" and Bhauja showered their love and affection for me and even though I used to stay in the hostel I always felt their quarters to be my first home. Bhauja by this time had already completed her post graduation and was employed as a Lecturer in the Kamala Nehru Women's College. Bhauja's mother, Bou, also used to stay with them quite often. Bhauja had lost her father when she was one year old. Bou and me used to spend a great amount of time with the two little boys.

One of these days I asked Bro about his PhD dissertation which he had started a long time back to which he responded by saying that it was in the cold storage. I urged him to renew his efforts as along I was there in Vanivihar. He accepted my request and restarted his dissertation work. Of course I was of little help to him but the day he successfully completed it i danced with joy. Bou and Bhauja shared their joy with me in full abundance when he was finally

awarded his Doctorate in the due course of time. I left Vanivihar in 1980 and joined a Central Government job but unhesitantly admit that I missed my first home. Subsequently I joined Rajendra College as a lecturer in History in the November of 1981 but I was forever in touch with my Bro and his family.

## Chapter 3: The Research Period

My marriage took place in the year 1988 when I was serving in Dhenkanal Mahila Mahavidyalaya. I had invited his whole family to attend the marriage ceremony in Athagarh. My Dethei was emphatic that Prasanna Bhai would not be able to make it to the wedding with his family and so I placed a bet with her. I won the bet and to her surprise Bhaina attended the ceremony with his entire family. I still have the photograph of Raja, my nephew serving food to the guests. Their very presence gave me a sense of arrogance as Alexander the Great upon conquering the world.

It was my Bro who inspired me to pursue research work. My wife was a working lady and my daughter, Liza, was a little one and so it wasn't an easy job for me to pursue research work. It was however his constant inspiration which made me bow before his wishes. He gave me a very difficult topic for my dissertation. Satyabhama Bhauja requested him to be kind to me but he was adamant and told her that he was very sure of my calibre and talent and therefore there was no question of leniency or sympathy for me. I requested permission to write my dissertation in my own coinage and style to which he refused stating that my language was too flowery and would turn the PhD dissertation into a novel. So with his steadfast guidance I was awarded my PhD in 1999. I owe him much for his inspiration and guidance. The loving contributions of Bou, Bhauja and Raja are also unforgettable.

## Chapter 4: The Sad Demise

I had been transferred from Model Degree College, Sonepur to BJB Autonomous College, Bhubaneswar in 2017. I had visited my Big Bro and his family at Patrapada only once during my stay in Bhubaneswar. This has been the most unfortunate aspect of my life. My Bro's house, my first home, could not be visited by me due to immense and intense family preoccupation, which is inexcusable. Just a few days before his sad demise I did have a telephonic conversation with him. At the time he was quite jovial. When his collapse took place in the bathroom and he was shifted to the ICU I did not have the scope to meet or talk to him. Then came the sudden news of his death and fate was so cruel to me that I could not attend his cremation which justifiably must have displeased my Bhauja. But I was undone. I met her on the Dasaha (10$^{th}$ day ceremony) and remained silent like a culprit.

I pray before the Lord that the soul of my Big Bro lives in perennial peace in its heavenly abode.



# ସ୍ମୃତିରେ ମାମୁଁ ପ୍ରସନ୍ନ କୁମାର ମିଶ୍ର

*ଆଶିଷ କର*

ପ୍ରସନ୍ନ କୁମାର ମିଶ୍ରଙ୍କ ସହ ପରିଚୟ ବିଂଶ ଶତାବ୍ଦୀର ଷଷ୍ଠ ଦଶକର ଶେଷ ଭାଗ ଓ ସପ୍ତମ ଦଶକର ପ୍ରଥମ ଭାଗରେ, ଯେତେବେଳେ ମୁଁ ବାଣୀବିହାରରେ ଡଃ ଶ୍ରୀ ରାମଚନ୍ଦ୍ର ଦାଶଙ୍କର ରାଜନୀତି ବିଜ୍ଞାନ ବିଭାଗର ଛାତ୍ର ହିସାବରେ ଯୋଗ ଦେଲି - ୧୯୬୮ ମସିହାରେ। ସେତେବେଳେ ବାଣୀବିହାରରେ ବହୁ ମାନ୍ୟଗଣ୍ୟ ଅଧ୍ୟାପକଙ୍କୁ ଦେଖିବାକୁ ମିଳୁଥିଲା। ରାଜନୀତି ବିଜ୍ଞାନ ବିଭାଗରେ ଶ୍ରୀରାମ ବାବୁଙ୍କ ବ୍ୟତୀତ ଡଃ ସତ୍ୟ ନାରାୟଣ ରଥ, ଦେବଦାସ ଛୋଟରାୟ, ରବିନାରାୟଣ ଦାସ, ଶାନ୍ତ ମଜୁମଦାର, ଶ୍ରୀମତୀ ସାରଦା ରଥଙ୍କ ଭଳି ଅଧ୍ୟାପକମାନେ ଥିଲେ। ଇତିହାସ ବିଭାଗରେ ଥିଲେ ଡଃ ମନ୍ମଥ ନାଥ ଦାସ, ଡଃ କରୁଣା ସାଗର ବେହେରା, ଅତୁଳ ଚନ୍ଦ୍ର ପ୍ରଧାନ ଆଦି ନାଁ କରା ଅଧ୍ୟାପକ। ମନସ୍ତତ୍ତ୍ୱ ବିଭାଗରେ ଡଃ ସରୋଜ ମିଶ୍ର, କମର୍ସରେ ସୂର୍ଯ୍ୟକାନ୍ତ ଦାସ ଆଦି। ଆଉ ଥିଲା ବାଣୀବିହାରର ବିରାଟ ଲାଇବ୍ରେରୀ ଓ ଅସଂଖ୍ୟ ପୁସ୍ତକର ସମାହାର। ଅନତିଦୂରରେ ଅବସ୍ଥିତ ଥିଲା ଛାତ୍ର ଛାତ୍ରୀମାନଙ୍କର ସୁନ୍ଦର ହଷ୍ଟେଲ। ବାଣୀବିହାରର ପରିବେଶ ଥିଲା ଅନନ୍ୟ। ସେହିଠାରେ ପଢିବାବେଳେ ମୋର ପରିଚୟ ଘଟିଥିଲା ପ୍ରସନ୍ନ ମାମୁଁଙ୍କ ସହ। ସେତେବେଳେ ଅବଶ୍ୟ ସେ ମୋର ସମ୍ପର୍କୀୟ ନ ଥିଲେ। କିନ୍ତୁ ତାଙ୍କର ସୁନ୍ଦର ହସ ହସ ଚେହେରା ମୋତେ ଏବଂ ମୋର ବନ୍ଧୁମାନଙ୍କୁ ଆକର୍ଷିତ କରିଥିଲା। ପ୍ରସନ୍ନ ମାମୁଁ ସେତେବେଳେ ଯୁବକ ଏବଂ ଇତିହାସ ବିଭାଗରେ ଚାକିରୀ କରୁଥିଲେ। ବାଣୀବିହାର ପାଣି ଟାଙ୍କି ପାଖରେ ଥିଲା ତାଙ୍କ କ୍ୱାଟର୍ସ। ସନ୍ଧ୍ୟାବେଳେ ଲାଇବ୍ରେରୀରୁ ବାହାରି ଆମ୍ଭେମାନେ ପାଣିଟାଙ୍କି ପାଖକୁ ଯାଉଥିଲୁ, ଯେଉଁଠି ବସ୍‌ଗୁଡିକ ଆସି ଛିଡା ହେଉଥିଲା। ତେଣୁ ସେଠାରେ ବହୁ ପରିଚିତ - ଅପରିଚିତ ଲୋକଙ୍କ ସହ ସାକ୍ଷାତ ହେଉଥିଲା।

ବାଣୀବିହାରରେ ଅଧ୍ୟାପକ, କର୍ମଚାରୀ ଏବଂ ଛାତ୍ରମାନଙ୍କ ମଧ୍ୟରେ ସମ୍ପର୍କ ସହଜ, ସରଳ ଓ ସାବଲୀଳ। ପ୍ରସନ୍ନ ମାମୁଁ ଏବଂ ତାଙ୍କର ବନ୍ଧୁମାନେ ଆମକୁ ବିଭିନ୍ନ ବିଷୟରେ ସାହାଯ୍ୟ କରୁଥିଲେ ଏବଂ ପରାମର୍ଶ ଦେଉଥିଲେ। ଯେଉଁ ସମ୍ପର୍କ ସେତେବେଳେ ତାଙ୍କ ସହ ଗଢି ଉଠିଥିଲା, ତାହା ବହୁଦିନ ଧରି ରହିଥିଲା। ପରେ ପ୍ରସନ୍ନ ମାମୁଁ ବାଣୀବିହାର ଇତିହାସ ବିଭାଗରୁ ପ୍ରଫେସର ହିସାବରେ ଅବସର ଗ୍ରହଣ କରିଥିଲେ। ତାଙ୍କର ପତ୍ନୀ ମଧ୍ୟ ସେହି ବିଭାଗରୁ ପ୍ରାଧ୍ୟାପିକା ଭାବରେ ଅବସର ନେଇଥିଲେ। ଗୋଟିଏ ସାଧାରଣ ପରିବାରରେ ଜନ୍ମ ଗ୍ରହଣ କରି ପ୍ରସନ୍ନ ମାମୁଁ ନିଜର ମେଧା ଏବଂ ପରିଶ୍ରମ ବଳରେ ଆପଣାକୁ ପ୍ରତିଷ୍ଠିତ କରିପାରିଥିଲେ।

ଚାହୁଁ ଚାହୁଁ ତାଙ୍କର ଇହଲୀଳା ସମ୍ବରଣ ବର୍ଷେ ପୂରଣ ହେବାକୁ ଯାଉଛି। ଏ କଥା ବିଶ୍ୱାସ କରି ହେଉ ନାହିଁ ଯେ ସେ ଆଉ ଆମ ଗହଣରେ ନାହାନ୍ତି - ଆଉ ଆମେମାନେ କୌଣସି ସମସ୍ୟାରେ ତାଙ୍କର ପରାମର୍ଶ ନେବା ପାଇଁ ଦଉଡି ଯାଇ ପାରିବୁ ନାହିଁ। ତେବେ ଗୋଟିଏ କଥା କହି ଲେଖାଟି ଶେଷ କରୁଛି। ୧୯୭୧ ମସିହାରେ ଷ୍ଟେଟ୍‌ବ୍ୟାଙ୍କର ପ୍ରୋବେସନାରୀ ଅଫିସର ହିସାବରେ ମୁଁ ମନୋନୀତ ହେଲି। ୧୯୭୮ ମସିହାରେ ବିଜେବି କଲେଜର ଅଧ୍ୟାପିକା ଭାରତୀ ମିଶ୍ରଙ୍କ ସହ ମୋର ବିବାହ ପ୍ରସ୍ତାବ ପଡିଲା। ଭାରତୀଙ୍କ ଘର ସହ ପ୍ରସନ୍ନ ବାବୁଙ୍କ ସମ୍ପର୍କ ଥିଲା। ମୋର ଶାଶୁ ଶ୍ୱଶୁର ତାଙ୍କର ପରାମର୍ଶ ନେଲେ। ପ୍ରସନ୍ନ ବାବୁଙ୍କର ବିବାହର ନିମିତ୍ତ ଅନୁକୂଳ ସୁପାରିଶ ଥିଲା। ବିବାହପରେ ପ୍ରସନ୍ନ ବାବୁ ପ୍ରସନ୍ନ ମାମୁଁ ହେଲେ। ଜଗନ୍ନାଥଙ୍କ ନିକଟରେ ମୁଁ ତାଙ୍କର ଆତ୍ମାର ସଦ୍‌ଗତି କାମନା କରୁଛି।



# ଚିର ନମସ୍ୟ ପ୍ରସନ୍ନ ନନା

ଚତୁର୍ଭୁଜ ପଣ୍ଡା (ରାଜ)

ଜନ୍ମ ଓ ମୃତ୍ୟୁ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ। ଏହା ସମସ୍ତେ ଜାଣି ମଧ୍ୟ ସୃଷ୍ଟିର ନିୟମକୁ କେହି ବାଧା ଦେଇପାରିବେ ନାହିଁ। ବହୁବ୍ୟକ୍ତି ଇହଧାମରୁ ବିଦାୟ ନେଇ ସାରିଥିଲେ ବି ସେମାନଙ୍କର ବ୍ୟକ୍ତିତ୍ୱ, ତ୍ୟାଗ ଓ ଜୀବନଶୈଳୀ ଅଦ୍ୟାବଧି ଅମର କରିରଖିଛି। ତଥାପି ନିଜର କୌଣସି ଆତ୍ମୀୟଙ୍କୁ ହରାଇଲେ ଆମେ ଦୁଃଖରେ ମ୍ରିୟମାଣ ହୋଇପଡୁ।

ପ୍ରସନ୍ନ ନନାଙ୍କ ସହିତ ବନ୍ଧୁତ୍ୱ ସମ୍ପର୍କ ଯେତିକି ନୁହଁ, ତାଙ୍କ ବ୍ୟକ୍ତିତ୍ୱ ପାଇଁ ସେ ଚିର ନମସ୍ୟ ଅଟନ୍ତି। ସେ ମୋ ପାଇଁ ଥିଲେ ଏକାଧାରରେ ବଡ଼ଭାଇ, ମୁରବୀ ଓ ମାର୍ଗଦର୍ଶକ, ମୋର ଯେତେବେଳେ ଯେଉଁ ଅସୁବିଧା ହେଲେ ମଧ୍ୟ ସେ ଦେବଦୂତ ପରି ଧାଇଁ ଆସନ୍ତି ଓ ଭଲମନ୍ଦ ବୁଝି ତାଙ୍କର ଉପଦେଶ, ସାହାର୍ଯ୍ୟ ଓ ସହାନୁଭୁତିର ହାତ ବଢାଇ ଦିଅନ୍ତି। ମୋର ଆଜି ୪୫ ବର୍ଷର ଭୁବନେଶ୍ୱରରେ ରହଣି ଓ ବ୍ୟବସାୟ ପ୍ରତିଷ୍ଠାନ (ପ୍ରେସ୍) ଚଳାଇବାରେ ନନାଙ୍କର ଦିଗ୍‌ଦର୍ଶନ ମୋତେ ଆଗକୁ ବାଟ କଢାଇ ନେଇଛି। ଆମ ପରିବାର ପ୍ରତି ପ୍ରଗାଢ ସ୍ନେହ ଶ୍ରଦ୍ଧା ତାଙ୍କୁ ସବୁଦିନ ପାଇଁ ଅମର କରି ରଖିବ।

ସେହି ହସ ହସ କଥା ପଦଟିଏ ଓ 'ରାଜ' ଡାକ ଆଜିକୁ ଏକ ବର୍ଷ ହେବ ଶୁଣିପାରୁ ନାହିଁ। ଏଭଳି ଏକ ସରଳ, ନିଷ୍କପଟ ହୃଦୟର ମଣିଷଟି ବିଷୟରେ ମୋ ଭଳି ଅକଞ୍ଚନ କଣ ଅବା କରିବ। ତାଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଛି, ଆତ୍ମୀୟସ୍ୱଜନ ଓ ପରିବାରଙ୍କୁ ଧର୍ଯ୍ୟବାନ କରାନ୍ତୁ।

# ଅଲିଭା ସ୍ମୃତି

*ଚନ୍ଦ୍ରକାନ୍ତ ପଣ୍ଡା (ଚକରା)*

ପ୍ରଶନ୍ନ ନାନାଙ୍କ ଆକସ୍ମିକ ବିୟୋଗରେ ମୁଁ ଅତ୍ୟନ୍ତ ମର୍ମାହତ ହୋଇପଡିଥିଲି। ସେ ଥିଲେ ଆମ ସମସ୍ତଙ୍କର ମୁରବୀ ଯେକୌଣସି ବିଷୟରେ ତାଙ୍କ ପରାମର୍ଶ ଆମର ଅତି ମୂଲ୍ୟବାନ୍ ଥିଲା। କାଲିପରି ଲାଗୁଛି ତାଙ୍କ ସହିତ ପ୍ରଥମ ଦେଖା ୧୯୮୫ ମସିହାରେ ବଡ ନନାଙ୍କର ବିଭାଘର ଚତୁର୍ଥୀ ଦିନ। ପ୍ରସନ୍ନ ନନା, ନାନୀ ଆମ ଗାଁକୁ ଯାଉଥିଲେ। ନନା, ଭାଉଜଙ୍କୁ ଆଶୀର୍ବାଦ ଦେବାପାଇଁ । ବାସ୍ତବିକ ତାଙ୍କର ଆମ ପ୍ରତି ଥିଲା ଅତି ଆତ୍ମୀୟତା। ସେ ଥିଲେ ଧିର ସ୍ଥିର ଓ ସରଳ ସ୍ୱଭାବରେ ମଣିଷଟିଏ। ଜୀବନର ସମସ୍ତ ସମୟ ଅଧ୍ୟାପନା ଓ ଅଧ୍ୟୟନରେ ଅତିବାହିତ କରୁଥିଲେ। କୌଣସି ଲୋକକୁ ଟାଣ ଶବ୍ଦରେ କହିବା ମୁଁ କେବେ ଶୁଣି ନାହିଁ।

ଉତ୍କଳ ବିଶ୍ୱବିଦ୍ୟାଳୟ ଇତିହାସ ବିଭାଗରୁ ଅବସର ନେବା ପରେ ମୋର ନନାଙ୍କ ସହିତ ବେଶି ମିଶିବାର ସୁଯୋଗ ଆସିଥିଲା। କାରଣ ସେ ବହୁସମୟ ଘରେ ରହୁଥିଲେ ଏବଂ ପଢାପଢି କରୁଥିଲେ। ମୁଁ ତାଙ୍କ ଘରକୁ ଗଲେ ସେ ମୋତେ ଦେଖି ବହୁତ ଖୁସି ହୋଇଯାଉଥିଲେ ଏବଂ ତାଗିଦ୍ କରି ଲୀନା (ମୋର ସ୍ତ୍ରୀ) କୁ ସାଙ୍ଗରେ ଆଣିବାକୁ କହୁଥିଲେ । ତାଙ୍କର ଆମ ପ୍ରତି ଏତେ ଭଲ ପାଇବା ମୁଁ କେବଳ ଅନୁଭବ କରିଛି, ତାହା ପ୍ରକାଶ କରିପାରୁ ନାହିଁ। ତାଙ୍କ ବିଷୟରେ ମୁଁ ବା କ'ଣ ଲେଖିବି ? ଜଗତର ନାଥ ଶ୍ରୀଜଗନ୍ନାଥ ନନାଙ୍କ ଆତ୍ମାଙ୍କୁ ଶାନ୍ତି ଦିଅନ୍ତୁ। ସେ ଯେଉଁଠି ଥାଆନ୍ତୁ। ଭଲରେ ଥାଆନ୍ତୁ। ମୋର ପ୍ରଭୁଙ୍କ ନିକଟରେ ଏତିକି ପ୍ରାର୍ଥନା।

# ଆଉ ଶୁଭୁନାହିଁ ରମଣୀ ଡାକ

*ରମଣୀବାଳା ପଣ୍ଡା*

ନନା

ଆପଣ ଯେଉଁଠି ଥାଆନ୍ତୁ ନା କାହିଁକି। ମୁଁ ଆପଣଙ୍କୁ ଏଇଠି ଥାଇ ପ୍ରଣାମ ଜଣାଉଛି। ଭୁବନେଶ୍ୱର ଆସିଲା ଦିନରୁ ଆପଣଙ୍କୁ ମୋର ମୁରବୀ, ବଡଭାଇ ଆମର ମାର୍ଗଦର୍ଶକା ବୋଲି ଜାଣିଥିଲୁ। କିନ୍ତୁ ଏତେ ଶିଘ୍ର ଆମକୁ ଛାଡି ସବୁଦିନ ପାଇଁ ଚାଲିଯିବେ ଅଫେରା ରାଇଜକୁ ଆମେ କେବେ ସ୍ୱପ୍ନରେ ଭାବି ନଥିଲୁ। ଆପଣ ଯେତେ ବେଳେ ଯାହା କହୁଥିଲେ ମୁଁ ତାକୁ ସବୁବେଳେ ମାନି ଆସୁଥିଲି। କେବେ ଆପଣଙ୍କ କଥାକୁ କାଟି ନଥିଲି। ତା ହେଲେ ଆପଣ ଚାଲିଗଲେ କାହିଁକି। ମୁଁ ଯେବେ ଆପଣଙ୍କ ଘରକୁ ଯାଉଥିଲି, ଗେଟ୍ ପାଖରେ ପହଞ୍ଚିଲେ ସେଇ ଶ୍ରଦ୍ଧା ଡାକ ଶୁଭୁଥିଲା। ଆରେ ତୁ ଆସିଛୁ କି। ଆ ଆ ସଙ୍ଗେ ସଙ୍ଗେ ନାନୀଙ୍କୁ ଡାକି କହିବେ ଆରେ ଦେଖ ରମଣୀ ଆସିଲାଣି। ଏବେ ଘରକୁ ଗଲେ ସେଇ ଡାକ ଆଉ ଶୁଭୁ ନାହିଁ, ଆଖିରୁ ଲୁହ ବାଧା ମାନୁନି। ମୁଁ ଗାଁର ଝିଅ, ଗାଁର ବୋହୂ, ନନା ଆପଣ ମତେ ପ୍ରଥମ ଥର ଭବନେଶ୍ୱର ଆଣିଥିଲେ। ଏବେ ମୁଁ ଭୁବନେଶ୍ୱରରେ ରହୁଛି, ହେଲେ ଆପଣ ଆମକୁ ଛାଡି ଚାଲିଗଲେ। ଆଉ ଗୋଟିଏ କଥା ପୁଚୁ ବ୍ରତଘର ପାଇଁ ଏତେ ବ୍ୟସ୍ତ ହେଉଥିଲେ। ସବୁକାମ ଭଲରେ ଭଲରେ ହୋଇଗଲା ଆପଣ ବହୁତ ଖୁସି ଥିଲେ। ଆମେ କଣ କିଛି ଭୁଲ୍ କରିଥିଲୁ କଣ ପାଇଁ ଆମକୁ ଦୁଃଖ ସାଗରରେ ଭସାଇ ଦେଇ ଚାଲିଗଲେ। ଆପଣଙ୍କ ଶ୍ରଦ୍ଧା ଥାଉ ଆଦରକୁ ମନ ଝୁରୁଛି। ନନା ଯେବେ ଆମେ ବିପଦରେ ପଡୁଥିଲୁ ସେତେବେଳେ ଆପଣ ସବୁବେଳେ ଭଗବାନ୍‌ଙ୍କ ରୁପରେ ଆମ ପାଖରେ ଠିଆ ହେଉଥିଲେ, ଏବେ ଆମକୁ ଅସହାୟ ଲାଗୁଛି। ଏତିକି ମିନତି କରୁଛି ଆପଣ ଯେଉଁଠି ଥାଆନ୍ତୁନା କାହିଁକି ସବୁବେଳେ ଆମକୁ କୃପା ଦୃଷ୍ଟିରେ ଚାହିଁଥିବେ।

ଶେଷରେ ଜଗନ୍ନାଥଙ୍କ ପାଖରେ ଅଳି କରୁଛି ଆପଣଙ୍କର ଆତ୍ମାର ସଦ୍‌ଗତି ହେଉ।





# ସ୍ମୃତିରେ ନନା

*ଯାଜ୍ଞସେନୀ ମିଶ୍ର*
ବଳରାମପୁର ତଳଗଡ

ପ୍ରସନ୍ନ ନନାଙ୍କ କଥା ମନେ ପଡିଲେ ମୋର ଧର୍ମରାଜ ଯୁଧିଷ୍ଠିର କଥା ମନେପଡେ। ମୁଁ ତାଙ୍କୁ ଯେତିକି ଦେଖିଛି ତାଙ୍କ ନାମଟି ସାର୍ଥକ ନାମ ବୋଲି ଲାଗେ। ସଦା ପ୍ରସନ୍ନ, ଶାନ୍ତି, ନୀରିହ, ସୁନ୍ଦର ବ୍ୟସ୍ତ ମଣିଷଟିଏ। ମୋ ସାନଭଉଣୀ ପଦ୍ମାର ସେ ନଣନ୍ଦେଇ। ପଦ୍ମାକୁ ଦେଖିବାକୁ ଆମ ଘରକୁ ଯେବେ ସେ ଆସିଥିଲେ ସେଦିନଠାରୁ ଶେଷଯାଏ ଯେତେଥର ତାଙ୍କ ସହ ଦେଖା ହୋଇଛି ଏଇ ବିଶ୍ଳେଷଣର କେବେ ବ୍ୟତିକ୍ରମ ହୋଇନାହିଁ। ସାନଭଉଣୀ ଠାରୁ ତାଙ୍କ ବିଷୟରେ ସବୁବେଳେ ଶତ ମୁଖ ପ୍ରଶଂସା ହିଁ ଶୁଣିବାକୁ ମିଳେ। ଆମ ଘରକୁ ଯେବେ ସେ ଆସିବେ ବୋଲି ଆମେ ଶୁଣିଲୁ, ଭାବିଥିଲୁ ବାଣୀବିହାରରେ ପ୍ରାଧ୍ୟାପକ। ସ୍ୱଭାବ ଗମ୍ଭୀର ହୋଇଥିବେ। କିନ୍ତୁ ପହଞ୍ଚିଲା କ୍ଷଣି ଯେପରି ସହଜ ସରଳ ଭାବେ ସମସ୍ତଙ୍କ ସହ ମିଶିଗଲେ ଲାଗିଲା କେତେକାଳର ଚିହ୍ନା ଆପଣାର ମଣିଷଟିଏ। କେତେ ଉଦାର ବ୍ୟକ୍ତିତ୍ୱ। ବାହାଘର ସଂପର୍କରେ ଏଭଳି ମଣିଷଟିଏ ଯଦି ଉପସ୍ଥିତ ରହିଥାନ୍ତି ତେବେ କାମ ଏତେ ସୁରୁଖୁରୁରେ ହୋଇଯାଏ ତାହା କେବଳ ଅନୁଭବୀ ଜନହିଁ ଜାଣିପାରିବ।

ଯେତେବେଳେ ବି ଦେଖା ହୋଇଯିବେ ମଧୁରଉଦାର ହସ ସହ ସେ ଯେଉଁ ସ୍ୱାଗତ ତାକୁ କେବେ ଭୁଲି ହେବ ନାହିଁ। ତାଙ୍କ ସଂପର୍କରେ ଯିଏ ବି ଆସିବ ସେ ଏକଥାକୁ ଅସ୍ୱୀକାର କରିପାରିବ ନାହିଁ। ସମସ୍ତଙ୍କୁ ଆପଣାର କରି ନିଜ ହୃଦୟରେ ସ୍ଥାନ ଦେଇପାରିବା ଭଳି ତାଙ୍କ ପରି ମିଣଷଟିଏ ଦୁର୍ଲଭ। ଦୁର୍ଲଭ ବୋଲି ସେ ଏତେ ପ୍ରିୟ। ତାଙ୍କ ଅକାଳ ବିୟୋଗ ସମ୍ବାଦ ପାଇଲାକ୍ଷଣି ମୁଁ ସ୍ତମ୍ଭୀଭୁତ ହୋଇଗଲି। ଏତେ ଭଲ ମଣିଷଟିକୁ ଠାକୁର ଏତେ ଶୀଘ୍ର ତାଙ୍କ ପାଖକୁ ନେଇଗଲେ ! ନାନୀଙ୍କୁ କ'ଣ କହି ସାନ୍ତ୍ୱନା ଦିଆଯାଇପାରିବ ମୁଁ ଚିନ୍ତା କରି ପାରିଲି ନାହିଁ। ପିଲାମାନଙ୍କ ପାଇଁ ସେ ହିମାଳୟ ପର୍ବତ ପରି ସୁରକ୍ଷା ପ୍ରଦାନକାରୀ ଥିଲେ। ତାଙ୍କପରି ମଣିଷଟିର ଆତ୍ମା ନିଶ୍ଚୟ ସଦ୍‌ଗତି ପ୍ରାପ୍ତ ହେବ ଏଥିରେ ସନ୍ଦେହର ଅବକାଶ ନାହିଁ। ୟା' ଭିତରେ ବର୍ଷଟିଏ ତାଙ୍କ ବିନା ପୂର୍ଣ୍ଣ ହେବାକୁ ବସିଲାଣି। ଲାଗୁଛି ଏବେବି ସେ ସେଇମିତି ପ୍ରସନ୍ନ ଚିତ୍ତ ଅଛନ୍ତି। ଆଉ ପଛରେ ଛାଡିଯାଇଥିବା ତାଙ୍କ ଆତ୍ମୀୟମାନଙ୍କୁ ଆଶୀର୍ବାଦ କରୁଛନ୍ତି। ସେହି ଦିବଂଗତ ପ୍ରସନ୍ନ ନନାଙ୍କୁ ମୁଁ ମୋର ଭକ୍ତିପୂତ ପ୍ରଣାମ ଜଣାଉଛି।



# ନନାଙ୍କ ସ୍ମୃତିରେ

*ପଦ୍ମାସେନୀ ମିଶ୍ର (ପତି)*

ନନାଙ୍କ ବିଷୟରେ ଲେଖିବା କଥା ଭାବିଲାବେଳକୁ ମନଟା କଷ୍ଟ ହୋଇଯାଉଛି । ସେ ଆମ ପାଇଁ ବଡଭାଇ ନୁହେଁ ବାପା ପରିଥିଲେ । ନୂଆ ବାହାହୋଇ ଯାଇଥାଏ ଚତୁର୍ଥୀ ଦିନ ନୂଆ ନାମ ଦେବା ସମୟ ଆସିଲାରୁ ସେ କହିଲେ ମୁଁ ନାମ ଦେବି । ସମସ୍ତେ ତାଙ୍କ ଆଡକୁ ଚାହିଁଲେ । ହସି ହସି ସେ କହୁଥାନ୍ତି ଶିଖେଇ ଶିଖେଇ ସେ ବାହାହୋଇ ପଡିଲା । ତେଣୁ ମୁଁ ତା ନାମ ଶିଖା ଦେଲି । ଆଜି ମଧ୍ୟ ମୋ ଶାଶୁଘରେ ମୋତେ ସମସ୍ତେ ଏଇ ନାମରେ ଡାକନ୍ତି । ତାଙ୍କଠାରୁ ଯେଉଁ ଶ୍ରଦ୍ଧା ମୁଁ ପାଇଛି ତାହା ସବୁଦିନ ମୋ ହୃଦୟରେ ଲିପିବଦ୍ଧ ହୋଇ ରହିବ । ଆମେ ତ ଅନେକ ସମୟରେ ଓଡିଶା ବାହାରେ ରହୁଥାଉ ତେଣୁ ବେଶି ମିଶିବାର ସୁଯୋଗ ମିଳିନାହିଁ । ଥରେ ବୋଉ ଗାଁକୁ ଯାଇଥିଲେ । ପିଲାମାନେ ଛୋଟ ଥିଲେ । ତେଣୁ ମୁଁ ଯାଇ ନାନୀଙ୍କ ପାଖରେ ୮ ଦିନ ଖଣ୍ଡେ ରହିଥିଲି । ନାନୀ କଲେଜ ଗଲାବେଳେ ମୋତେ କହି ଯାଇଥାନ୍ତି ନନା ଯଦି ମଝିରେ ଆସିବେ ତାଙ୍କୁ ଟିକେ ଚା କରିଦବୁ । ନନା ମଝିରେ ଯଦି କଲେଜରୁ ଆସନ୍ତି ସେ ସେଇ ଦାଣ୍ଡଘରେ ହିଁ ବସି ଲେଖା ପଢା କରୁଥାନ୍ତି । ମୁଁ ନେଇ ଚା ଟିକେ କରିଦିଏ । ସେ ବିଶେଷ ଗପସପ କରନ୍ତି ନାହିଁ । କମ୍ କଥା କହନ୍ତି । କିନ୍ତୁ କଥା କହିଲା ବେଳେ ମଜା ମଜା କଥା ସବୁ କହନ୍ତି । ତାଙ୍କ କମ୍ କଥା କହିବା ଭିତରେ ବି ତାଙ୍କ ସ୍ନେହଶ୍ରଦ୍ଧା କୁ ବୁଝିହୁଏ । ସେ ଜଣେ ଭଲ ଗାଇଡ୍ ଥିଲେ । ବହୁତ ପିଲା ତାଙ୍କ ପାଖରେ ପିଏଚ୍‌ଡ଼ି କରିଛନ୍ତି । ଶୁଣିଛି ତାଙ୍କ ଛାତ୍ରମାନେ ତାଙ୍କୁ ବହୁତ ଭଲ ପାଉଥିଲେ । ମୋ ସ୍ୱାମୀଙ୍କୁ ସେ ପୁଅଠାରୁ ଅଧିକ ସ୍ନେହ କରୁଥିଲେ ପିଜି କରୁଥିବା ସମୟରେ ଯାଙ୍କର କୁଆଡେ ବହୁତ ଦେହ ଖରାପ ହୋଇଥିଲା ମେଡିକାଲ୍‌ରେ ଥିଲେ ସେତେବେଳେ ଯେତେ ଯତ୍ନ ସେ ନେଇଛନ୍ତି ତାର ତୁଳନା ନାହିଁ । ମନଲାଖି ଭଲଭଲ ଖାଦ୍ୟ ସବୁ ବ୍ୟବସ୍ଥା କରି ରଖିଥାନ୍ତି । ଏ କହନ୍ତି ମୋର ଚେତକ ସ୍କୁଟର ପାଇଁ ଇଚ୍ଛା ଥାଏ ନନା ସେକଥା ଜାଣିପାରି ତାଙ୍କ ଗାଡିଟାକୁ ମୋତେ ଦେଇ ଦେଲେ । ପାଠ ପଢିଲାବେଳେ ଯେତେବେଳେ ଯାହା ଦରକାର ନ ମାଗୁଣୁ ସେ ସବୁ ଯୋଗାଇ ଦେଉଥିଲେ । ମୁଁ ଦେଖିଛି ନନାଙ୍କର ସାର୍ଟ ସବୁ ସଫା ହୋଇ ଲଣ୍ଡ୍ରିରୁ ଆସି ରଖା ହୋଇଥିବ ଇଏ ନିଜ ମଇଳା ସାର୍ଟକୁ ପକାଇ ଦେଇ ତାଙ୍କ ସାର୍ଟ ପିନ୍ଧି ଚାଲିଆସନ୍ତି । ପୁଣି ଆଉଥରେ ଗଲାବେଳକୁ ନନା ସେ ମଇଳା ସାର୍ଟକୁ ସଫାକରି ଆଇରନ୍ କରାଇ ରଖିଥାନ୍ତି ଇଏ ତାଙ୍କୁ ପିନ୍ଧି ମଇଳା ସାର୍ଟକୁ ପକାଇ ଦେଇ ଆସନ୍ତି । କେତେ ଦାବି ଇଏ ପାପାଙ୍କ ଉପରେ କରୁଥିଲେ ମୁଁ ସେକଥା ଭାବି ଆଶ୍ଚର୍ଯ୍ୟ ହୁଏ । ଆଉ ଦେଖିଛି କୌଣସି ଘରୋଇ କଥା ନାନୀ ନିଜେ ନକହି ପାରିଲେ ଯାଙ୍କୁ କହନ୍ତି ଇଏ ଯାଇ ନନାଙ୍କୁ କହିଲେ ନନା ସେ କଥା ଆଦରରେ ଗ୍ରହଣ କରନ୍ତି । ଆଜି ବି ତାଙ୍କ ସ୍ୱର ଶୁଭିଯାଉଛି । ଲାଗୁନାହିଁ ସେ ଆମମାନଙ୍କୁ ଛାଡି ଚାଲି ଯାଇଛନ୍ତି ବୋଲି । ଘରକୁ ଗଲେ ଦ୍ୱାରଟି ସେ ଖୋଲନ୍ତି । ଏଭଳି ଆମ୍ଭମାନଙ୍କୁ କରି ସେ ଘର ଭିତରକୁ ଡାକି ନିଅନ୍ତି ଯେ ଖୁସିରେ ପେଟ ପୁରିଉଠେ । ସେ ଆମକୁ ବହୁତ ମନ ପଡନ୍ତି ଭଗବାନଙ୍କ ନିକଟରେ ତାଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ କାମନା ।



# ଅବିସ୍ମରଣୀୟ ୰ ପ୍ରସନ୍ନ ନନା

*ସୁଦର୍ଶନ ଦାସ*

ଜୀବନ ଓ ମୃତ୍ୟୁ ଦୁଇଟି ଅବଧାରିତ ସତ୍ୟ ହୋଇଥିଲେ ମଧ୍ୟ ମଣିଷର ମନ ମୃତ୍ୟୁକୁ ଏତେ ସହଜରେ ଗ୍ରହଣ କରି ପାରେନା। ପ୍ରସନ୍ନ ନନାଙ୍କ ସ୍ମୃତି ମୋ ସହିତ କେବଳ ଏକ ଶଳା-ଭିଣୋଇର ଔପଚାରିକ ସମ୍ପର୍କ ଦୃଷ୍ଟିକୋଣରୁ ଯେତିକି ନୁହେଁ ତାଙ୍କ ବ୍ୟକ୍ତିତ୍ୱ ଦୃଷ୍ଟିକୋଣରୁ ମୋ ପାଇଁ ତଦ୍ୱଧିକ ଅଭୁଲା। ସେ ପ୍ରକାରନ୍ତରେ ମୋର ଗୁରୁ ଏବଂ ଗାଇଡ୍ ଥିଲେ। ହଠାତ୍ ଏପରି ଆରପାରିକୁ ଚାଲିଯିବା ମତେ ବିସ୍ମିତ କରିଥିଲା ତାଙ୍କ ଦେହାନ୍ତ ସମ୍ପର୍କିତ ସମ୍ବାଦ ପାଇଲା ପରେ। ମୁଁ ଏମିତି ଏକ ଅବସ୍ଥାରେ ପଡିଗଲି ଯେ ସତ୍ୟନାନୀଙ୍କୁ ଫୋନ୍ ଯୋଗେ କିଛି ସାନ୍ତ୍ୱନା ଦେବାକୁ ସାହସ କରିପାରି ନଥିଲି। ତାଙ୍କର ଅନ୍ତିମ ଦର୍ଶନ ପାଇଁ ମୋର ଅବକାଶ ନଥିଲା କିଛି ବ୍ୟକ୍ତିଗତ ଅନିବାର୍ଯ୍ୟ କାରଣବଶତଃ। ଭାଗବଦ କହିଛନ୍ତି :

**"ପ୍ରାଣୀର ଭଲମନ୍ଦ ବାଣୀ**
**ମରଣ କାଳେ ତାହା ଜାଣି।"**

ଆଜିର ବିଶ୍ୱାସ - ଅବିଶ୍ୱାସ କବଳିତ ସ୍ୱାର୍ଥପର ଦୁନିଆରେ କିଏବା କାହାର ମନ କଥା ଜାଣୁଛି ବୁଝୁଛି। ଜୀବନର ଅନେକ ଅଭୁଲା କାହାଣୀ ଅଲେଖା, ଅଧାଲେଖା ବା ଲେଖି ନ ପାରିବାର ଗ୍ଲାନି ଓ ଅବଶୋଷ ମଧ୍ୟରେ ରହିଯାଏ। ନନା ସେଇମିତି ତାଙ୍କ ଜୀବନର ଅନେକ କାହାଣୀ, ସ୍ମୃତି ଓ ଅନୁଭୂତିକୁ ନିଜ ହୃଦୟ ଭିତରେ ଧରି ରଖି ହଠାତ୍ ଇହଧାମରୁ ବିଦାୟ ନେଇଗଲେ। ଯେବେ ଜଣେ ମଣିଷ ବଂଚିଥିବା ବେଳେ ତାଙ୍କର ଜୀବନର ମହତ୍ତ୍ୱ, ବ୍ୟକ୍ତିତ୍ୱ ଓ ଆଦର୍ଶ ଓ ତାଙ୍କ ହୃଦୟର ଭାଷାକୁ ବୁଝି ପାରିଲେ ନାହିଁ ତାଙ୍କ ଜୀବନର ଆବର୍ତ୍ତମାନରେ ତାଙ୍କ ଏ ସ୍ମୃତି ଚାରଣରେ କି ଲାଭ ? ବିଚିତ୍ର ଏ ଦୁନିଆ। ବିଚିତ୍ର ଆମେମାନେ, ଯେଉଁଠି ସମ୍ପର୍କର ମୂଲ୍ୟ ମଣିଷ ସହଜରେ ବୁଝି ପାରେନା। ନିଜର ଜ୍ଞାତି କୁଟୁମ୍ବ ଓ ପରିବାରବର୍ଗ ବୁଝି ପାରୁନଥିବା ବେଳେ ଅନ୍ୟମାନଙ୍କ କଥା କଣ କହିବା ? ବିଜ୍ଞାନ କହେ, ଶରୀରରେ ରକ୍ତ ସୃଷ୍ଟି ହେବାରେ ପାଣିର ଯଥେଷ୍ଟେ ଭୂମିକା ଅଛି, ଅର୍ଥାତ୍ ପାଣି ବିନା ରକ୍ତର ସୃଷ୍ଟି ଅସମ୍ଭବ। ତେବେ ରକ୍ତ - ରକ୍ତ, ପାଣି - ପାଣି। ଆଜି କାଲି ପାଣି ରକ୍ତରେ ମିଶି ରକ୍ତର ଗୁଣ ଓ କର୍ମ ଗ୍ରହଣ କରିବାର କ୍ଷମତା ରଖିପାରୁନି ଆମର ପାରିବାରିକ ଜୀବନରେ। ତେଣୁ କରି କୁହାଯାଇଛି :

"Blood is Thicker Than Water"

ମଣିଷଟିଏ କିନ୍ତୁ ସବୁବେଳେ ନିଜ ଦୁନିଆରେ ନିହାତି ଏକଲା, ତାର କର୍ମ, ଚିନ୍ତାଧାରା, ଜୀବନର ଆଦର୍ଶ ଓ ଅନୁଭୂତିକୁ ନେଇ। ପ୍ରସନ୍ନ ନନା ମୋ ବିଚାରରେ ଅଲଗା ନୁହନ୍ତି। ସେ ନିଜସ୍ୱ ଦୁନୁଆରେ ଅତ୍ୟନ୍ତ ଏକଲା ଏକ ଏକଲବ୍ୟ ଥିଲେ। ବାହାର ଦୁନିଆ ପାଇଁ ସେ ଏକ ନୀତି ନିଷ୍ଠ, କର୍ତ୍ତବ୍ୟ ପରାୟଣ, କଠୋର ଅନୁଶାସନ ପ୍ରିୟ ବିବେକୀ ମଣିଷଟିଏ ଥିଲେ। ତାଙ୍କର କିଏ ନିନ୍ଦା କରନ୍ତୁ ବା ପ୍ରଶଂସା କରନ୍ତୁ ସେଥିପାଇଁ ସେ ଆଦୌ ବିଚଳିତ ହେଉନଥିଲେ। ଛାତ୍ର ଜୀବନରୁ ଜଣେ ଛାତ୍ରନେତା ଭାବେ ଛାତ୍ରଛାତ୍ରୀମାନଙ୍କର ସମସ୍ୟା ସମାଧାନ କରୁଥିବା ବେଳେ ତାଙ୍କ ବୃତ୍ତିଗତ ଶିକ୍ଷକ ଜୀବନରେ ମଧ୍ୟ ଛାତ୍ରଚାତ୍ରୀମାନଙ୍କର ସମସ୍ୟା ସମାଧାନରେ ସେ ଅଗ୍ରଣୀ ଭୂମିକା ନିର୍ବାହ କରୁଥିଲେ। ବୋଧହୁଏ ବୃ□ଗତ ଅନୁଶାସନ ତାଙ୍କ ବ୍ୟକ୍ତିତ୍ୱରେ ଛାଇ ହୋଇ ରହିଯାଇଥିଲା ଯାହାକୁ ନିଜ ପାରିବାରିକ ଓ ସାମାଜିକ ଜୀବନରେ ମଧ୍ୟ ସେ ପ୍ରୟୋଗ କରୁଥିଲେ। ତାଙ୍କ ସହିତ ଥଟ୍ଟାମଜା କରିବାକୁ ଆମପରି ଶାଳକମାନଙ୍କୁ ମଧ୍ୟ ଏହି କାରଣରୁ ନନାଙ୍କର ଭର୍ତ୍ସନା ଶୁଣିବାର ଦୃଷ୍ଟାନ୍ତ ରହିଛି। ଠିକ୍ ସମୟରେ ଠିକ୍ କାମ କରନ୍ତି ଓ ଅନ୍ୟମାନଙ୍କ ଠାରୁ ମଧ୍ୟ ସେୟା ଆଶା କରନ୍ତି। ଥରେ କାହାକୁ କୌଣସି କଥା ଦେଇଦେଲେ ନିଜର ମୁଣ୍ଡ କାଟ

ହେଇଯାଉପଛେ ସେ, ସେ କଥାକୁ ନିଶ୍ଚୟ ରକ୍ଷା କରିବେ। ସେ ଜଣେ ବପରୋପକାରୀ ମଣିଷ। ତାଙ୍କ ଅତି ନିକଟୁ ନ ଦେଖିଲେ ତାଙ୍କ ବ୍ୟକ୍ତିତ୍ୱକୁ ପରଖିନେବା ଏତେ ସହଜ ନୁହେଁ। ଶାସ୍ତ୍ରରେ ଅଛି :

**"ନିନ୍ଦନ୍ତୁ ନୀତିନିପୁଣା ଯଦିବା ସ୍ତବନ୍ତୁ**
**ଲକ୍ଷ୍ମୀ ସମାବିଶତୁ ଗଚ୍ଛତୁ ବା ଯଥେଷ୍ଟମ୍**
**ଅଦ୍ୟୈବ ମରଣମସ୍ତୁ ଯୁଗାନ୍ତରେ ବା**
**ନ୍ୟାୟାତ୍ ପଥ ପ୍ରବିଚଳନ୍ତି ନ ଧୀରାଃ।"**

ଅର୍ଥାତ୍, ନୀତିନିପୁଣ ବ୍ୟକ୍ତିମାନେ ନିନ୍ଦା କରନ୍ତୁ ବା ପ୍ରଶଂସା କରନ୍ତୁ, ଲକ୍ଷ୍ମୀ ଅବସ୍ଥାନ କରନ୍ତୁ ବା ଅନ୍ୟତ୍ର ଛାଡି ଚାଲି ଯାଆନ୍ତୁ, ଏବେ ମରଣ ହେଉ ବା ଯୁଗ ଶେଷରେ ହେଉ, ଜ୍ଞାନୀ ଲୋକମାନେ ନ୍ୟାୟର ପଥରୁ କେବେ ବିଚଳିତ ହୁଅନ୍ତି ନାହିଁ। ନନା କଠୋର ଓ ଅପ୍ରିୟ ସତ୍ୟ କହନ୍ତି। ସେଥିପାଇଁ ବୋଧହୁଏ ତାଙ୍କ ବୃତ୍ତିଗତ ଜୀବନରେ ତାଙ୍କ ପ୍ରତି ଅନ୍ୟାୟ କରାଯାଇଥିଲା। ଉଚ୍ଚ ନ୍ୟାୟାଳୟର ବିଳମ୍ବିତ ପ୍ରକ୍ରିୟା ତାଙ୍କ ଜୀବନର ଅଧିକାଂଶ ସମୟକୁ ଦୁଃଖ ଓ ଗ୍ଲାନି ଜର୍ଜରିତ କରିଥିଲା। ଶେଷରେ ସେ ଅବଶ୍ୟ ଜୟଯୁକ୍ତ ହୋଇଥିଲେ, ମାତ୍ର ସେ ପୋଡା ତରକାରୀର ସ୍ୱାଦ କମ୍ ଥିଲା।

Justice was delayed hence denied when deserved.

ତଥାପି, ଗୌରବମୟ ଉତ୍କଳ ବିଶ୍ୱବିଦ୍ୟାଳୟର ରାଜକୀୟ ଇତିହାସ ବିଭାଗର ମୁଖ୍ୟ ତଥା ପ୍ରଫେସର୍ ମନ୍ମଥ ନାଥ ଦାସଙ୍କର ଜଣେ ପଟଶିଷ୍ୟ ଭାବେ ସେଇ ବିଭାଗର ମୁଖ୍ୟଭାବେ ଚାକିରୀରୁ ଅବସର ଗ୍ରହଣ କରିବା କମ୍ କଥା ନୁହେଁ। କହିବା ବାହୁଲ୍ୟ ଯେ ମୁଁ ମଧ୍ୟ ସେଇ ବିଭାଗର ଜଣେ ଛାତ୍ର ଓ ପ୍ରଫେସର୍ ଦାସଙ୍କ ପ୍ରେରଣା ମତେ ଆଗକୁ ବଢିବାରେ ସାହାଯ୍ୟ କରିଛି।

ନନାଙ୍କ ବ୍ୟକ୍ତିତ୍ୱର ଝଲକ ମୁଁ ପ୍ରଥମେ ପାଇଲି, ବାଣୀବିହାରର ଇତିହାସ ବିଭାଗରେ ସ୍ନାକୋତ୍ତର ଶ୍ରେଣୀରେ ୧୯୭୭-୭୮ ଶିକ୍ଷାବର୍ଷର ଆରମ୍ଭରେ ଯୋଗଦାନ କରିବା ସମୟରେ। ଅଳ୍ପ କଥା କହନ୍ତି କିନ୍ତୁ ମଧୁରଭାଷୀ। ତାଙ୍କମୁଖ ମଣ୍ଡଳରେ କିନ୍ତୁ ସର୍ବଦା ଗାମ୍ଭୀର୍ଯ୍ୟଭାବ ପ୍ରକାଶିତ। ଯେତେବେଳେ ଇତିହାସ ବିଭାଗରେ ଜଣେ ରିସର୍ଚ୍ଚ ସ୍କଲାର ଭାବେ ସେ କାମ କରୁଥିଲେ। ତାଙ୍କର ଆବଭାବ ମତେ ପ୍ରଥମେ ପ୍ରଥମେ ନଡିଆର ଖୋଳପା ପରି ରୁକ୍ଷ ଲାଗୁଥିଲା। ମୋର ଅତି ଆଦରଣୀୟା ଭଉଣୀ ସତ୍ୟନାନୀଙ୍କ ମାଧ୍ୟମରେ ଅବଶ୍ୟ ପରେ ଅନୁଭବ କଲି ଯେ ଏଇ ରୁକ୍ଷ ପ୍ରତୀୟମାନ ହେଉଥିବା କଳେବର ଭିତରେ ନାରୀକେଳ ଜଳ ପରି ଏକ ସ୍ୱଚ୍ଛ, ନିର୍ମଳ ଓ ପବିତ୍ର ହୃଦୟ ରହିଛି। ସତ୍ୟନାନୀଙ୍କ ସହ ନନାଙ୍କର ନିରାଡମ୍ବର ବାହାଘର ମତେ ନନାଙ୍କର ସାନ୍ନିଧ୍ୟ ଲାଭ କରିବାର ସୁଯୋଗ ସୃଷ୍ଟିକଲା। ନାନାଙ୍କ ଉପଦେଶ ଓ ନାନୀଙ୍କର ନୋଟ୍ ଖାତା ଓ ବହି ମତେ ଅଧ୍ୟୟନ କ୍ଷେତ୍ରରେ ସାହାଯ୍ୟ କଲା।

ଅନେକ ଉପଦେୟ ପାଠ୍ୟ ପୁସ୍ତକର ନନା ରଚୟିତା ଥିଲେ। ଗଡଜାତ ଆନ୍ଦୋଳନ ଓ ମିଶ୍ରଣ ତଥା ଆଧୁନିକ ଓଡିଶାର ପୁନର୍ଗଠନର ପ୍ରାଞ୍ଜଳ ତଥ୍ୟ ଛାତ୍ରଛାତ୍ରୀ ତଥା ସାଧାରଣପାଠକମାନଙ୍କ ପାଇଁ ଅତ୍ୟନ୍ତ ଉପାଦେୟ ମନେହୁଏ। ନାନାଙ୍କ ପ୍ରେରଣାରେ ନାନୀ ମଧ୍ୟ ଅନେକ ସନ୍ଦର୍ଭ ଲେଖି ଗୋଟିଏ ଦୁଇଟି ପୁସ୍ତକ ରଚନା କରିଛନ୍ତି।

ଜୀବନସାରା ନନା ସଂଗ୍ରାମରତ ରହିଥିଲେ। କଲେଜ ଜୀବନରେ ନନା ଜଣେ ଶକ୍ତିଶାଳୀ ତଥା ଦୁର୍ଦ୍ଦାନ୍ତ ଛାତ୍ରନେତା ଥିଲେ। ୰ପ୍ରଫେସର ମନ୍ମଥ ନାଥ ଦାସଙ୍କର ଜଣେ ଆଜ୍ଞାଧିନ ଓ ଅନୁଗତ ଛାତ୍ର ହିସାବରେ ତାଙ୍କର ଶ୍ରଦ୍ଧାଭାଜନ ହୋଇ ବିଭାଗରେ ପ୍ରଥମେ ଜଣେ ରିସର୍ଚ୍ଚଲାରଭାବେ ଯୋଗଦେଇ ପରେ ଅଧ୍ୟାପକ ପଦବୀରେ ନିଯୁକ୍ତି ପାଇଲେ ଓ କିଛି ବାଧାବିଘ୍ନ ଅତିକ୍ରମ କରି ଶେଷରେ ବିଭାଗୀୟ ମୁଖ୍ୟଭାବେ ଚାକିରୀରୁ ଅବସର ନେଲେ। ନ୍ୟାୟିକ ପ୍ରକ୍ରିୟାରେ ବିଳମ୍ବଜନିତ କିଛି ଦୁଃଖ

ତାଙ୍କ ମନକୁ ବାରମ୍ବାର ବିଚଳିତ କରୁଥିଲା। ସତ୍ୟ ଓ ନ୍ୟାୟ ପଥରେ ଗତିକରୁଥିବା ମଣିଷମାନଙ୍କୁ ଯେ ଦୁଃଖ ସହିବାକୁ ପଡେ ଏହା ଆମ ଯୁଗଧର୍ମର ବିଡମ୍ବନା। ସତ୍ୟ ନାନୀ ପ୍ରାଧ୍ୟାପିକା । ସତ୍ୟଭାମା ପତି ପ୍ରସନ୍ନ ନନାଙ୍କ ଧର୍ମପତ୍ନୀ। ନାନୀଙ୍କର ଜୀବନର ସେ ଏକ ପ୍ରକାର ପଥ ପ୍ରଦର୍ଶକ ଥିଲେ। ନାନୀ ମୋର ପ୍ରତିବେଶୀ ଗାଆଁର ଝିଅ। ମୋଠାରୁ ବୟସରେ ମାତ୍ର ପ୍ରାୟ ବର୍ଷେ ଦୁଇବର୍ଷ ବଡ। ମୋ ଝିଅ ଝିଲ୍ଲୀ ଓ ମୋ ପୁଅ ଚିଦାନନ୍ଦର ସେ ମଧ୍ୟ ଗୁରୁ। ଆଳି ବ୍ଲକର୍ ଧୋୟା ଅଞ୍ଚଳରେ ଆମର ଜନ୍ମ। ପ୍ରଳୟଙ୍କରୀ ବନ୍ୟା ଓ ଦାରିଦ୍ର୍ୟତାର କଠୋର କଷାଘାତ ଭିତରେ ଆମେ ଜୀବନ ସଂଗ୍ରାମରେ ଉତ୍ତୀର୍ଣ୍ଣ ହୋଇ ମଣିଷ ହୋଇଛୁ। ନାନୀ ଆମ ଅଞ୍ଚଳର ଏକ ଆଦର୍ଶ ମୁକ୍ତା। ନାରୀ ଶିକ୍ଷାର ପ୍ରଗତିର ଏକ ଉଜ୍ଜ୍ୱଳ ଆଦର୍ଶ ଓ ଉଦାହରଣ ସେ ଆମ ଅଞ୍ଚଳରେ। ପିଲାଦିନରୁ ବାପାଙ୍କୁ ହରେଇଥିଲା। ନନାଙ୍କୁ ବାହାହେଲାପରେ ମାଆଙ୍କୁ ଆଣି ପାଖରେ ରଖିଲା। ମାଉସୀ ତା'ରି ପାଖରେ ଆଖି ବୁଜିଲା। ଏବେ ନନା ଚାଲିଗଲେ। ଏବେ ନାନୀର ମନ ଏକଲାପଣରେ ବେଳେବେଳେ ଆନ୍ଦୋଳିତ ହେଉଯାଉଛି। ନାନାଙ୍କର ଅଭାବବୋଧ ତା ଆଖିରୁ ସବୁବେଳେ ଲୁହର ବନ୍ୟା ନିର୍ଗତ କରୁଛି। ନାନୀ ମୋର ଅନାଥିନୀ ହେଇଗଲା।

ସତ୍ୟନାନୀ ଯେତେବେଳେ ମାଟ୍ରିକ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲା ଆମ ସାରା ଧୋୟା ଅଞ୍ଚଳରେ ତାର ନାମ ସର୍ବତ୍ର ପ୍ରତିଧ୍ୱନିତ ହେଲା। ଅନେକ ସମୟରେ ତା ଜୀବନର ଅବଶୋଷ ସମ୍ପର୍କରେ ମୋ ପାଖରେ କହି ମନ ଦୁଃଖ କରେ। ସେ ଯାହା ହେବାକୁ ଚାହିଁଥିଲା ତାହା ହେଇପାରିଲା ନାହିଁ ବୋଲି କହେ। ଅସଂଖ୍ୟ ଛାତ୍ରଛାତ୍ରୀ ସୃଷ୍ଟି କରିବା ପରେ ମଧ୍ୟ ତଥାପି ତା ମନରେ ଅବଶୋଷ। ଏବେ ତା'ର ମୁଖ୍ୟ ପ୍ରେରଣାର ଉତ୍ସ ପ୍ରସନ୍ନ ନନା ଛାୟାପଥର ଏକ ନିଷ୍ପ୍ରଭ ଓ ଅମଳିନ ନକ୍ଷତ୍ର। ପିଲାଦିନେ ମୁଁ ନାନୀଙ୍କ ଘର ସଂଲଗ୍ନ ନଦୀବନ୍ଧ ଦେଇ ତାଙ୍କ ଗ୍ରାମରେ ଅବସ୍ଥିତ ଦଧିବାମନୀ ଜୀୟୁ ମଧ୍ୟ ଇଂରାଜୀ ବିଦ୍ୟାଳୟ (ମାଇନର୍ ସ୍କୁଲ) କୁ ପଢିବାକୁ ଗଲାବେଳେ ନାନୀ ମୋର ବିପରୀତ ଦିଗରେ ତାଙ୍କ ଘର ପାଖରୁ ପ୍ରାୟ ୩ କି.ମି. ବାଟ ଚାଲିଚାଲି ଆମ ଅଞ୍ଚଳର ଏକମାତ୍ର ଗୋବିନ୍ଦପୁର ହାଇସ୍କୁଲକୁ ପଢିବାକୁ ଯାଏ। ଆମେ ଆମ ଆଡୁ ତା ସହିତ କଥା ହେବାକୁ ଭୟ କରୁଥିଲୁ। ସେଇଠି ନାନୀ ସହିତ ଦେଖାହେଲେ ନାନୀ ବଡ ଭଉଣୀ ତଥା ପାଠପଢାରେ ସିନିୟରିଟି ଖାତିରିରେ ମୋ ଉପରେ ମାଷ୍ଟ୍ରି ଦେଖାଏ। ଭାରି ଚଳଚଞ୍ଚଳା ଥିଲା ସେ ପିଲାବେଳେ। ଏବେ ବି ତାର ସେଇ ମାଷ୍ଟ୍ରି ମୋ ଉପରେ କାମଚ଼ରେ। ନାନୀ ଆମ ଅଞ୍ଚଳରେ ସମସ୍ତଙ୍କର ପ୍ରିୟ।

ନାନୀ ସହିତ ମୋର ସମ୍ପର୍କର ଇତିହାସ ଏଠାରେ ଲେଖିବା ପଛରେ ମୋର କୌଣସି ବିଶେଷ ଅଭିପ୍ରାୟ ନାହିଁ, ମାତ୍ର ନାନୀ, ବିନା ପ୍ରସନ୍ନ ନନାଙ୍କ ସ୍ମୃତିଚାରଣର ପରିକଳ୍ପନା ମୋ ପାଇଁ ଅସମ୍ଭବ ଯାହା ବିନା ମୋର ଏଇ ଆଲେଖ୍ୟଟି ଅଧୁରା ରହିଯିବ କାରଣ ଉଭୟ ସତ୍ୟନାନୀ ଓ ପ୍ରସନ୍ନ ନନା ମୋ ଜୀବନର ଭବିଷ୍ୟତ ପାଇଁ ପ୍ରେରଣାର ଦୁଇଟି ଶକ୍ତିଶାଳୀ ସ୍ତମ୍ଭ ଥିଲେ। ସତ୍ୟନାନୀ, ଏକଦା ପାଠ ପଢି ଜୀବନରେ ପ୍ରତିଷ୍ଠିତ ହେବାର ସ୍ୱପ୍ନ ଓ ସଂକଳ୍ପରୁ ଓହରିଯାଇ ପାଠ ପଢିବା ନିଷ୍ପତ୍ତିରୁ ଓହରି ଯିବାକୁ ନିଷ୍ପତ୍ତି ନେଇ ଗାଆଁର ଝାଟିମାଟି କୁଡିଆ ଘରକୁ ନିରାଶରେ ଫେରି ଯାଇଥିବା ବେଳେ ପସନ୍ନ ନନା, ସତ୍ୟ ନାନୀର ସଂକଳ୍ପକୁ ପୂର୍ଣ୍ଣ କରିବାପାଇଁ ସହଯୋଗର ହାତ ବଢାଇଲେ ଓ ଶେଷରେ ଘଟଣା କ୍ରମେ ଏକାଧାରରେ ନାନୀର ଜୀବନ ସାଥୀ, ଗୁରୁ ଜୀବନର ପଥ ପ୍ରଦର୍ଶକ ବନିଗଲେ।

ନାନାଙ୍କ ସହିତ ଏମିତି ଅନେକ ସ୍ମୃତି ରହିଛି। ତାଙ୍କର ଜଣେ ସର୍ବ ଭାରତୀୟ ସ୍ତରର ଗ୍ରାମ୍ୟ ଶାଳକ ଭାବେ ଏବଂ ଇତିହାସ ବିଭାଗର ଜଣେ ଛାତ୍ରଭାବେ ବାଣୀବିହାରରେ ଅଧ୍ୟୟନ କରୁଥିବା ବେଳେ ନନାଙ୍କୁ ମୋର ମୁଖ୍ୟ ପରାମର୍ଶ ଦାତା ହିସାବରେ ମୁଁ ଗ୍ରହଣ କରିଥିଲି। ଏଥିପାଇଁ ମୋର ମାଧ୍ୟମ ଥିଲା ସତ୍ୟ ନାନୀ।

ଥରେ ଇତିହାସ ବିଭାଗର ସାଂସ୍କୃତିକ ସମ୍ପାଦକ ପଦପାଇଁ ନିର୍ବାଚନ ଲଢିବାକୁ ମୁଁ ପ୍ରସ୍ତୁତ ହେଉଥିବା ବେଳେ ମୋର କେତେକ ବିଜେବି କଲେଜରୁ ଆସିଥିବା ଭୁବନେଶ୍ୱରିଆ ସହପାଠୀ ବନ୍ଧୁ ମୋ ଉପରେ ଦାଦାଗିରି ଦେଖାଇ ଏ ନିର୍ବାଚରୁ ନଓହରିଲେ ମାଡଖାଇବ ବୋଲି କହି ଧମକ ଦେଲେ। ନନା କୌଣସି ସୂତ୍ରରୁ ଏ ଖବର ପାଇ ମତେ ବସାକୁ ଡକେଇ ଏ ନିର୍ବାଚନରେ ନ ଲଢିବାକୁ ପରାମର୍ଶ ଦେଲେ। ମୁଁ ସେତେବେଳେ ଲେଖାଲେଖି, ସଙ୍ଗୀତ ପରିବେଷଣ ଓ ବଂଶୀବାଦନରେ ଆକ୍ଟିଭ୍ ଥିଲି। ନନାଙ୍କର ଏ ପରାମର୍ଶ ଗ୍ରହଣ କରିବା ମୋପାଇଁ ସେତେବେଳେ କଷ୍ଟ ଦାୟକ ଥିଲେ ମଧ୍ୟ ଏ ପରାମର୍ଶ ଗ୍ରହଣ କରି ନିର୍ବାଚନରୁ ଓହରି ଯାଇଥିଲି ଓ ପରବର୍ତ୍ତୀ ସମୟରେ ମୋପାଇଁ ଏହା ଏକ ଉଚିତ ପଦକ୍ଷେପ ଥିଲା ବୋଲି ମୁଁ ଅନୁଭବ କରିପାରିଥିଲି।

ଦ୍ୱିତୀୟ ବର୍ଷ ସ୍ନାତକୋତ୍ତର କ୍ଲାସ୍ ଆରମ୍ଭ ବେଳକୁ ମୁଁ ୟୁକୋ ବ୍ୟାଙ୍କର କିରାଣୀ ପଦବୀ ପାଇଁ ନିଯୁକ୍ତି ପତ୍ରଟିଏ ପାଇଥିଲି। ଏହା ପାଇବା ପରେ ମୋର ଚିନ୍ତା ବଢି ଯାଇଥିଲା। ମୁଁ ଯେ କୌଣସି ମତେ ପୋଷ୍ଟ ଗ୍ରାଜୁଏସନ୍ ଶିକ୍ଷାଲାଭ କରିବାକୁ ଚାହୁଁଥିବା ବେଳେ ମୋର ବଡ ଦୁଇ ଭାଇ ମତେ ଚାକିରୀରେ ଯୋଗଦେବାକୁ ଚାହୁଁଥିଲେ। ମୋ ଉପର(ମଝିଆଁ) ଭାଇ ମୋର ସେତେବେଳର ପାଠପଢା ଖର୍ଚ୍ଚର ଦାୟିତ୍ୱ ବହନ କରୁଥିବା କାରଣରୁ ତାଙ୍କ ଉପରେ ଆର୍ଥିକ ଚାପ ପଡିବା ସ୍ୱାଭାବିକ ଥିଲା। ନିଜ ପରିବାରର ଦାୟିତ୍ୱ ନେବା ସାଙ୍ଗକୁ ମତେ ପଢାଇବା ନିଶ୍ଚିତଭାବେ କଷ୍ଟସାଧ୍ୟ ଥିଲା। ତେଣୁ ସେ ମତେ ଚାକିରୀ କରି ପାଠପଢିବା ପାଇଁ କହୁଥିଲେ। ପୋଷ୍ଟ ଗ୍ରାଜୁଏସନ୍ ଶିକ୍ଷା ସମାପ୍ତ ନକଲେ ଯେ ମୋ ଭିତରେ ଜୀବନରେ ପ୍ରତିଷ୍ଠିତ ହେବାର ଆତ୍ମପ୍ରତ୍ୟୟ ସୃଷ୍ଟିହେବାର ସମ୍ଭାବନା ଖୁବ୍ କମ୍ ଥିଲା ବୋଲି ମୁଁ ଭାବୁଥିଲି। ଜୀବନରେ ଓଏଏସ୍ ବା ଆଇଏଏସ୍ ଅଫିସରଟିଏ ହେବାର ନିଶାକୁ ମୁଁ ପ୍ରତ୍ୟାଖାନ କରିଦେବାର ପ୍ରଶ୍ନ ଉଠୁନଥିଲା । ମୋ ମନର ଦୃଢ ସଂକଳ୍ପକୁ ଧୂଳିସାତ୍ କରି। ଚାକିରୀ ପାଇଛି ବୋଲି ଜାଣି ସେତେବେଳେ କଟକରେ ଭାଇ ବସାରେ ରହୁଥିବା ମୋ ବୋଉ ଅତ୍ୟଧିକ ଖୁସି ହୋଇ, ତୁ ଚାକିରୀରେ ଯୋଗଦେଲେ ତୋ ବାହାଘରଟା ଏ ବର୍ଷ ନିଶ୍ଚୟ କରିଦେବି ବୋଲି ଦୃଢ କଣ୍ଠରେ ଘୋଷଣା କରିଦେଲା। ଦରିଦ୍ରତା ଆମପରି ଅର୍ଥନୈତିକ ଦୁର୍ବଳ ଶ୍ରେଣୀରେ ଲୋକମାନଙ୍କୁ ଉପହାସ କରୁଥିବା ବେଳେ ବୋଉର ଏ ପ୍ରସ୍ତାବ ମୋ ଗୋଡକୁ ପଛକୁ ଟାଣି ନେବାପରି ଲାଗୁଥିଲା। ପ୍ରେୟସୀ ପ୍ରେମିକାଙ୍କ ଘର ତରଫରୁ ମଧ୍ୟ ଅନେକ ସମୟ ଧରି ସେତେବେଳକୁ ପ୍ରତୀକ୍ଷା ସରିଲାଣି। ମୁଁ ମନ ଦୁଃଖରେ ଅଖିଆ ଅପିଆ, କଟକ ଭାଇ ବସାରୁ ବାଣୀବିହାର ଫେରି ଆସିଲି। ଦିନେ ଦୁଇଦିନ ପରେ ମଝିଆଁ ଭାଇ ବାଣୀବିହାରରେ ପହଞ୍ଚିଗଲେ ଓ ଆମେ ଦୁହେଁ ସତ୍ୟନାନୀ ଓ ପ୍ରସନ୍ନ ନନା ରହୁଥିବା ବାଣୀବିହାର ପାଣିଟାଙ୍କି ନିକଟସ୍ଥ ଫ୍ଲାଟକ୍ୱାଟରର ଉପର ମହଲାକୁ ଗଲୁ। ଭାଇଙ୍କର ଚାହା ଜଳଖିଆ ଖିଆପିଆ ସମୟରେ ନାନୀ ଓ ନନାଙ୍କ ସହିତ ଏ ସମ୍ପର୍କରେ ଆଲୋଚନା ହେଲା। ଏହା ପୂର୍ବରୁ ମୁଁ ନାନୀ ଓ ନନାଙ୍କ ସହିତ ଏ ବିଷୟରେ ଆଲୋଚନା କରି ମୋ ମନ କଥା ଜଣାଇ ସାରିଥିଲି। ମୁଁ ଭବିଷ୍ୟତରେ ଆଉ ଚାକିରୀଟିଏ ପାଇବିକି ନାହିଁ, ଭାଇଙ୍କ ମନରେ ସନ୍ଦେହ ଥିଲା। ନନା କହିଲେ, ସେ ଭଲ ପଢୁଛି ଓ ଭବିଷ୍ୟତରେ ବଡ଼ ଚାକିରୀଟିଏ ନିଶ୍ଚୟ ପାଇବ ଓ ତାର ଚାକିରୀ ଦାୟିତ୍ୱ ମୁଁ ନେଉଛି। ଏହା କହିବା ପରେ ଭାଇ ଶେଷରେ ଏକମତ ହୋଇ ମୋ ପାଇଁ ଅଧିକ ଆର୍ଥିକ କଷ୍ଟ ସହିବାକୁ ତାଙ୍କ ଅନିଚ୍ଛା ସତ୍ତ୍ୱେ ରାଜିହେଲେ। ମୁଁ ନିଷ୍ଠାର ସହ ପୋଷ୍ଟ୍ ଗ୍ରାଜୁଏସନ୍ କୋର୍ସ ଶେଷ କଲି। ପ୍ରସନ୍ନ ନନାଙ୍କର ଏଇ ପ୍ରତିଶୃତିମୂଳକ ମନ୍ତବ୍ୟ ମୋ ଜୀବନରେ ସଫଳତାର ଏକ ମାଇଲ୍ ଖୁଣ୍ଟଭାବେ କାମ କଲା। ଜୀବନରେ ଦେଖିଥିବା ମୋ ସ୍ୱପ୍ନ ସାର୍ଥକ ହେଇଛି। ଏଇ ସ୍ୱପ୍ନକୁ ସାକାର କରିବାକୁ ମୁଁ ଜୀବନରେ ଆଉ କେଉଁ ଘାତ ପ୍ରତିଘାତ ଦେଇ ଯାତ୍ରା କରିଛି ତାହା ଅଲଗା କଥା। କିନ୍ତୁ ଘନ ଅନ୍ଧକାର ଭିତରେ ଆଲୋକବର୍ତ୍ତିକାଟିଏ ଜଳାଇ ଏକଦା ଯିଏ ଆଲୋକର ପଥ ଦେଖାଇଛନ୍ତି ତାଙ୍କୁ କଣ ସହଜରେ ଭୁଲିହେବ ?

ନନାଙ୍କ ବିଷୟରେ ବହୁତ କଥା କହିପାରିବାର ସାମର୍ଥ୍ୟ ଥିଲେ ବି ସବୁକଥା ଏଠାରେ ପ୍ରକାଶ କରିବା ସମ୍ଭବ ନୁହେଁ। ତାଙ୍କର ସ୍ୱଭାବ, ଚରିତ୍ର ଓ ବ୍ୟକ୍ତିତ୍ୱ ସମ୍ପର୍କରେ କିଛି ମତାମତ ଦେବା ମୋ ପକ୍ଷରେ ଧୃଷ୍ଟତା ନିଶ୍ଚୟ। ଅନେକ ଥର ତାଙ୍କ ବିଷୟରେ ଚିନ୍ତା କରିଛି। ସେ ପ୍ରାୟତଃ ସବୁବେଳେ ନିଜ ଭିତରେ ରହିବାକୁ ଚେଷ୍ଟା କରନ୍ତି। ଅଳ୍ପ କଥା କହନ୍ତି ମାତ୍ର ନିର୍ଭିକ ଭାବରେ। ସତ୍ୟକୁ ପ୍ରକାଶ କରିବାକୁ କେବେ ବି କୁଣ୍ଠିତ ହୁଅନ୍ତି ନାହିଁ। ତାଙ୍କ ମନ ଗହନର ଦୁର୍ଗମ ବନ ଭିତରକୁ ପ୍ରବେଶ କରିବା ବେଳେବେଳେ ତାଙ୍କ ଜୀବନସାଥୀ ସତ୍ୟନାନୀଙ୍କ ପକ୍ଷରେ ମଧ୍ୟ ସମ୍ଭବ ହୋଇପାରେନା। ନିରବତା ସତେ ଯେମିତି ତାଙ୍କ ଜୀବନରେ ପ୍ରଥମ ଓ ଶେଷ ସାଥି ଥିଲା। ନିଜ ଛାତି ଭିତରର ଯନ୍ତ୍ରଣାକୁ ସେ କେମିତି ନିଜ ଭିତରେ ଚାପି ରଖିପାରୁଥିଲେ କେଜାଣି ! ମୁଁ ଏଭଳି ନିରବତାର କାରଣ ବହୁତ ସମୟରେ ଜାଣି ନପାରିବା ସ୍ୱାଭାବିକ। ଶେଷରେ ନିଜ ଶରୀର ସମ୍ବନ୍ଧୀୟ ସେଇ ଯନ୍ତ୍ରଣାକୁ ମଧ୍ୟ ଚାପିରଖି ଏମିତି ଭାବେ ଆରପାରିକୁ ଚାଲିଗଲେ ଯେ ବୋଧହୁଏ କେହି ଜାଣିପାରିଲେ ନାହିଁ।

ନନା,ସତ୍ୟନାନୀଙ୍କୁ ବହୁତ ଭଲପାଆନ୍ତି। ତେଣୁ ତାଙ୍କୁ ସବୁବେଳେ ପ୍ରାୟତଃ ସ୍ନେହଶୀଳ ଦୃଷ୍ଟିରେ ଦେଖନ୍ତି। ବୋଧହୁଏ ପରିବାର ତଥା ବୃତ୍ତିକ୍ଷେତ୍ରର ଅନେକ ଦୁଃଖ ଓ ଗ୍ଲାନି ସେ ନିଜ ହୃଦୟରେ ଚାପି ରଖିବାକୁ ଚାହୁଁଥିଲେ। ବହୁତ ସମୟରେ ନାନୀ ଏଥିପାଇଁ ମନ ଦୁଃଖ କରେ। ମୂଳତଃ ସେ ସ୍ନେହଶୀଳ ଉତ୍ତମ ମଣିଷଟିଏ। ମାତ୍ର ଶିଷ୍ଟାଚାର ଓ ଶୃଙ୍ଖଳାର ଅଭାବ ପରିଲକ୍ଷିତ ହେଲେ ସେ କାହାକୁ ଛାଡ଼ନ୍ତି ନାହିଁ। ଏଥିପାଇଁ ନାନୀଙ୍କର କେତେକ ସମ୍ପର୍କୀୟ ଲୋକେ ମଧ୍ୟ ନନାଙ୍କୁ ଭୟ କରନ୍ତି। ସ୍ନାୟୁଜନିତ ଦୁର୍ବଳତା ତାଙ୍କୁ ଜୀବନର ଅପରାହ୍ନରେ କଷ୍ଟ ଦେବାକୁ ଆରମ୍ଭ କଲା। ଜୀବଜନ୍ତୁଙ୍କ ସ୍ୱଭାବର ନନା ଶେଷରେ ଏକ ସହଜ ସୁଲଭ ମରଣ ଲାଭ କଲେ, ଯଦିଓ ମୁଁ ଭାବୁଥିଲି ନନା ଅତି କମରେ ଆହୁରି ଦଶ ବର୍ଷ ବଞ୍ଚିଥାନ୍ତେ। ସବୁ ସମୟର ଖେଳ।

"ସମୟର ନଈ ଯାଉଅଛି ବହି
ସେଥିକୁ ଆୟତ୍ତକା'ର !
ଜରାଜୀର୍ଣ୍ଣ ଏଇ ଶରୀର କରୁନି
ବୟସର ଉପଚାର;
ଜୀବନଟା ପ୍ରୀତି ସରାଗର ଏକ
ଛାଇ ଆଲୁଅର ଖେଳ,
ଏଇ କ୍ଷଣି ଥାଇ ଆରକ୍ଷଣେ ନାହିଁ
କିବା ଲାଭ ମୂଳଚାଲ ?"

ଶାରୀରିକ ଅଙ୍ଗଭଙ୍ଗୀ ଓ ବକ୍ତବ୍ୟରେ ନିଜକୁ ଜଣେ ନାସ୍ତିକର ପରିଚୟ ଦେଉଥିଲେ ମଧ୍ୟ ବାସ୍ତବବାଦୀ ନନା ହୃଦୟରେ ଜଣେ ଗଭୀର ଆତ୍ମବିଶ୍ୱାସୀ ଓ ଈଶ୍ୱରଭକ୍ତ ଥିଲେ। ତେଣୁ ଶ୍ରୀହରି ବିଷ୍ଣୁ ଭଗବାନଙ୍କ ଆନନ୍ଦଧାମରେ ବ୍ରହ୍ମାନନ୍ଦ ଓ ପରମଶାନ୍ତିରେ ଅବସ୍ଥାନ କରିବା ପାଇଁ ତାଙ୍କ ପାଇଁ ଏକ ଦିବ୍ୟ ଆସନ ସଂରକ୍ଷିତ ହୋଇ ରହିଛି, ଏଥିରେ ଅନ୍ତତଃ ମୋର ସନ୍ଦେହ ନାହିଁ। ତାଙ୍କ ଆଶୀର୍ବାଦର ଫୁଲ ଚନ୍ଦନ ତାଙ୍କ ପରିବାରର ସମସ୍ତ ସଦସ୍ୟସଦସ୍ୟା ତଥା ସମ୍ପର୍କୀୟ ମାନଙ୍କ ଉପରେ ବର୍ଷଣ ହେଉଥାଉ ଓ ସେ ପଛରେ ଛାଡ଼ି ଯାଇଥିବା ତାଙ୍କର ଧର୍ମପତ୍ନୀ ସତ୍ୟ ନାନୀ ତଥା ପରିବାରର ସଦସ୍ୟମାନଙ୍କ ଉପରେ ପଡୁ ଏବଂ ସେମାନଙ୍କ ହୃଦୟରେ ଏ ଦାରୁଣ ବିଚ୍ଛେଦର ବେଦନାକୁ ସହିବାର ଶକ୍ତି ସଞ୍ଚାର ହେଉ, ଓ ସେମାନେ ପୁଣି ଥରେ ହସଖୁସିର ଦୁନିଆକୁ ଫେରି ଆସନ୍ତୁ ଏହା ମୋର ଶ୍ରୀ ଜଗନ୍ନାଥଙ୍କ ପାଦପଦ୍ମରେ ଆନ୍ତରିକ ବିନମ୍ର ପାର୍ଥନା।

**ଅବସରପ୍ରାପ୍ତ ଭାରତୀୟ ପ୍ରଶାସନିକ ସେବା ଅଧିକାରୀ,**
**ସତ୍ୟସାଇ ଏନ୍‌କ୍ଲେଭ୍, ଖଣ୍ଡଗିରି**
**ଫୋନ୍ ନଂ:-୭୭୩୫୩୨୨୨୬୨**



# ପୃଷ୍ଠାଏ ଅତୀତ: ସ୍ମୃତିର ଆଲେଖ୍ୟ

*ଡଃ.ମୁନୁରାଣୀ ମିଶ୍ର,* ଜର୍ଜ,
Family Court, Nabarangapur

Think only of the past, as its remembrance gives you pleasure-Jane Austen

କେବଳ ମୁଁ ନୁହଁ, ମୋ ଭଳି ଆହୁରି ଅନେକ ଆଜି ବି ଖୋଜୁଛନ୍ତି ସେଇ ମୁଗ୍ଧଅତୀତ ଭିତରୁ ଖୁବ ଆପଣାର ଲାଗୁଥିବା ଜୀବନବାଦୀ ସ୍ୱର ଆଉ ସଂଳାପ। ଯେଉଁଠି କେବଳ ଆପଣ ନିରନ୍ତର ଲିଭିଯାଉଥିବା ପାଦଚିହ୍ନରେ ଏବେବି ଚିତ୍ରମୟ ହୋଇଉଠୁଛି ଇତିହାସ ପୃଷ୍ଠା ପୃଷ୍ଠା ଭାସ୍ୱର-ଅଗଣିତ ପ୍ରାଣକୁ ଆନ୍ଦୋଳିତ କରୁଥିବା ଆପଣଙ୍କ ଗବେଷଣାର ଗଭୀରତା ଭିତରେ ବୌଦ୍ଧିକ ଚେତନାର ବିସ୍ମୟକର ସୌନ୍ଦର୍ଯଭରା ଉପହାର।

ଓଡ଼ିଆ ପୁଅ ଆପଣ ସଦା ପ୍ରସନ୍ନ

ଆପଣଙ୍କ ଗବେଷଣା, ବୌଦ୍ଧିକତା ଅନ୍ୟମାନଙ୍କ ଲାଗି ଈର୍ଷାର କାରଣ ହେଲେ ବି ଚିରକାଳ ଉଦାହରଣ। ତାହାହିଁ ଆପଣଙ୍କ ଚେତନା, ବୌଦ୍ଧିକତା ଓ ଆଦର୍ଶର ମାଇଲଖୁଣ୍ଟ। ଆପଣଙ୍କ ମନୋଜ୍ଞ ଗବେଷଣା ପଛରେ ଯେଉଁ ସାଧନା ଓ ସିଦ୍ଧି ତାହାରି ମୂଳରେ ନିଜ ନିରହଙ୍କାର ଜୀବନର ମୌଳିକ ଦର୍ଶନ। ଅନୁଭବର ତୀବ୍ରତାକୁ ନେଇ ଖୋଜିବା।

ଶ୍ରେଣୀକକ୍ଷରେ (Class Room) ବିଜ୍ଞାନ ସମ୍ବନ୍ଧ ଆହ୍ୱାନକୁ ମୁଗ୍ଧ ଚିତ୍ତରେ ପ୍ରକାଶ କରି ଛାତ୍ରଙ୍କ ହାତରେ ଆତ୍ମ ବିଶ୍ୱାସର ଚାବିକାଠି ଦେଇ ଆଉ କିଛି ଖୋଜିବାର ପ୍ରେରଣା ଦାୟକ ଗୁରୁ ଆପଣ, ସେଇଥିଲାଗିତ ଆପଣ ଅଗଣିତ ଛାତ୍ରଙ୍କ ଜିଜ୍ଞାଶୁ ମାନସରେ ଗୁରୁପରି ଗୁରୁଟିଏ, ମାଟିର ମହକରେ ଛାତ୍ରମାନଙ୍କୁ ଚିରକାଳ ଆନ୍ଦୋଳିତ କରି ରଖିବାର ପ୍ରେରଣାପ୍ରଦ ଉତ୍ସଟିଏ ଆପଣଙ୍କ ଚେତନାଶୀଳ, ବୌଦ୍ଧିକ ବିଚାରଧାରା। ମାଟିର ଆଚାର୍ଯ୍ୟ, ଜ୍ଞାନର ଆଲୋକ, ଅଜାଡ଼ି ଦେବାର ପ୍ରତିଶ୍ରୁତି, ଆପଣହିଁ ପ୍ରତ୍ୟେକ ଛାତ୍ର ପାଇଁ ଭାବନାର ମୁଗ୍ଧ ଆରତୀ।

ଆପଣଙ୍କ ବିଚାର, ଗବେଷଣା, ଜ୍ଞାନ ଆହରଣ ଆଉ ତା'ର ପରିବେଷଣ ପଛରେ ଯେଉଁ ସର୍ଜନଶୀଳ ପ୍ରାଣର ଆହ୍ୱାନ ଆପଣଙ୍କୁ ପ୍ରତିମୁହୂର୍ତ୍ତରେ ପାଦେ ପାଦେ ଆଗେଇଯିବା ପାଇଁ ପ୍ରେରଣା ଦେଇଥିଲା ତାହା ମୋର ନାନୀ ସତ୍ୟଭାମା। ତାଙ୍କ ଭାବର ଭୂମି ଆପଣଙ୍କ ବ୍ୟକ୍ତିତ୍ୱ ପ୍ରତିଷ୍ଠାର ଅନ୍ୟତମ ନିର୍ଯ୍ୟାସ କହିଲେ ଭୁଲ ହେବନାହିଁ। ଉଭୟଙ୍କ ସମ୍ମିଳିତ ଚେତନା ଓ ଆଭିମୁଖ୍ୟ ଦିବାଲୋକ ପରି ସ୍ୱଚ୍ଛ। ସମ୍ଭବତଃ ତାଙ୍କୁହିଁ ଆଧାର କରି ଆପଣ ହେଲେ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ, ଆତ୍ମବିଶ୍ୱାସୀ, ଆଉ ଗବେଷକ ପରି ଗବେଷକ ଟିଏ। ମୁଁ ଯେତେଦୂର ଜାଣେ ଆପଣଙ୍କ ଗବେଷଣା ମୂଳକ ୧୫୦ରୁ ଉର୍ଦ୍ଧ ଜାତୀୟ ଓ ଆନ୍ତର୍ଜାତୀୟ Journal ରେ ସ୍ଥାନ ପାଇ ବହୁ ଗବେଷକ ଜିଜ୍ଞାସୁ ମୁଗ୍ଧ ପାଠକ ଓ ଛାତ୍ର ପ୍ରାଣରେ ଭରି ଦେଇଛି ଆକଳନ ବିଶ୍ୱାସର ତତ୍ତ୍ୱମୂଳକ ଏବଂ ତଥ୍ୟଭିତ୍ତିକ ଆଲେଖ୍ୟ।

ସମୟୋଚିତ ପଦକ୍ଷେପ ହିଁ ଆପଣଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ସ୍ମରଣୀୟ ଦିଗ।

ଉତ୍କଳ ବିଶ୍ୱବିଦ୍ୟାଳୟର ବୌଦ୍ଧିକ ଇତିହାସରେ ଆପଣଙ୍କ ବିଚାରଶୀଳ ସିଦ୍ଧାନ୍ତର ନିଷ୍କର୍ଷ ଜଣେ କୃତବିଦ୍ୟ ବିଦ୍ଧାଣିଙ୍କ ଅମ୍ଳାନ ସ୍ମାରକୀ ବ୍ୟତୀତ ଅନ୍ୟ କିଛି ହୋଇନ ପାରେ। ଦୀର୍ଘ ୩୫ ବର୍ଷ ଧରି ନିଜର ନିରଳସ କର୍ମମୟ ଜୀବନଧାରା ସହ ଅଧ୍ୟୟନ ଓ ଅନୁଶୀଳନ ଆପଣଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଇତିହାସ ବିଭାଗର ପ୍ରଫେସର ହେବା ପାଇଁ ବାଧ କରିଥିଲା।

ଏବେ ମୋ ଭିତରେ ଏକ ପ୍ରଶ୍ନ ତାହା ସମୟର ଆହ୍ୱାନ, ନିଜ ସାଧନାରେ ସିଦ୍ଧି ଉପରେ ପ୍ରତିଷ୍ଠିତ, ତାହା ଆଉ ଏକ ଆଲୋଚନାର ଅପେକ୍ଷାରେ।

ହେ ଆଚାର୍ଯ୍ୟ ପ୍ରଫେସର ପ୍ରସନ୍ନ ମିଶ୍ର

ଆପଣହିଁ ଆପଣ ।

ସେଇ ଅନ୍ତହୀନ ଯାତ୍ରା, ବିଶ୍ୱାସର ଭୂମି ଉପରେ ପ୍ରତିଷ୍ଠିତ, ଜ୍ଞାନର ଆଲୋକ ବିତରଣରେ ଆପଣଙ୍କ ଖ୍ୟାତି ଦିଗରୁ ଦିଗନ୍ତ ଯାଏଁ ପରିବ୍ୟାପ୍ତ । ସ୍ୱାଭିମାନ ଥିଲା ଆପଣଙ୍କ ଜୀବନକୁ ଜିଆଇଁ ରଖିବାର ମାର୍ଗଦର୍ଶନ ।

ଭାଇନା, ଆପଣଙ୍କ ଅନୁପସ୍ଥିତି ମୋ ଭିତରେ ସୃଷ୍ଟି କରିଛି । ଅନେକ ଶୂନ୍ୟତା, କିଛି ନୀରବତା ତାକୁ ନେଇ ଏବେ ମୁଁ ସତ୍ୟା ନାନୀଙ୍କୁ ଦେଖୁଛି ।

ସେ ନିର୍ବାକ:

ପୁଅ ରାଜା ଓ ଛୁନୁ, ଝିଅ ମାମା, ବନ୍ଧୁ ପରିଜନ ମର୍ମାହତ, ଯେମିତି ଅଦେଖା କ୍ଷତରୁ ବହି ଚାଲିଛି ରକ୍ତ ଆଉ ରକ୍ତ । ଆପଣଙ୍କ ବିନା କେବଳ ଶୂନ୍ୟତା ହିଁ ଶୂନ୍ୟତା । ସେମାନଙ୍କ ଭଳି ମୋ ପାଇଁ ବି ଅନ୍ଧାର । ଜାଗତିକ ଜୀବନକୁ ନେଇ ଖୋଜୁଛୁ କିନ୍ତୁ ପାଉ ନାହୁଁ, ଅସ୍ପଷ୍ଟ ତୁମର ପାଦ ଚିହ୍ନ ଅଥଚ ସ୍ମୃତିକୁ ନେଇ ଲହୁଲୁହାଣ ହୋଇ ବାଟ ଚାଲୁଚୁ ତ ଚାଲୁଛୁ ।

ସମ୍ପର୍କରୁ ନିବିଡତା କୁ ହରେଇ ଦେବାର ବ୍ୟଥା ।

ଜଣେ ଅନୁଭବି ପ୍ରାଣର ଅକୁହା କଥା ବଦଳି ଯାଇଥିବା ଦୃଶ୍ୟପଟରେ ଆପଣଙ୍କ ଚେତନା ବ୍ୟାପିତ ଅମ୍ଳାନ ଶ୍ରୃଷ୍ଟିର ଇତିହାସ, ମୋ ପାଇଁ ଗୋଟା, ଗାଥା କବିତା ।

'Political Unrest in Odisha in 19th Century'

History of Governlors House'

Kingdom for Sale'

'ଉନବିଂଶ ଶତାବ୍ଦୀରେ ଗଣ ଆନ୍ଦୋଳନ'

ତା'ରି ଭିତରେ ରହିଛି ଆପଣଙ୍କ କଠୋର ସାଧାନା ଓ ତପସ୍ୟାର ଫଳ । ଅତୀତର ଅନ୍ଧାର ଭିତରେ ଧାରେ ଆଲୋକ ଖୋଜିବାର ପୌଧିକ ବିଚାର । ଆପଣଙ୍କ ସୃଷ୍ଟିର ଏକ ମାର୍ଜିତ ସ୍ୱର ଓ ଦସ୍ତଖତ । ଏହି ଅନୁଭବକୁ ନେଇ ଦୁଇ ପଦ ଲେଖିଲା ବେଳେ ଲାଗେ ଯେମିତି; ମୋର ଅଜାଣତରେ ଆଖି କୋଣରୁ ଖସିପଡୁଥିବା ଦୁଇ ଟୋପା ଲୁହରେ ଆପଣଙ୍କ ପ୍ରସନ୍ନ ଚିତ୍ତ ବେଳକୁବେଳ ଅଧିକ ସୁନ୍ଦର । ସେଇ ଅମର ଆତ୍ମାର ସଦ୍‌ଗତି କାମନା କରୁଛି । ଆପଣଙ୍କ ଶୋକ ସନ୍ତପ୍ତ ପରିବାର ପତ୍ନୀ, ପୁଅ, ବୋହୂ, ଝିଅ, ଜ୍ୱାଇଁଙ୍କୁ ଈଶ୍ୱରଙ୍କ ଆଶୀର୍ବାଦ ଲାଗି ପ୍ରାର୍ଥନା କରିରହୁଛି ।

ଇତି

ଆପଣଙ୍କ ସୌଜନ୍ୟ ମୁଗ୍ଧା

ମୁନୁ

ଜୟଗୁରୁ



# ✓ ପ୍ରସନ୍ନ ଭାଇନାଙ୍କ ସ୍ମୃତି ଉପଲକ୍ଷେ

*ରବିନ୍ଦ୍ରନାଥ ମିଶ୍ର* (ସାନଭାଇ)



କଟକ ଜିଲ୍ଲା ତିଗିରିଆ ବ୍ଲକ ଅନ୍ତର୍ଗତ ଗୋପୀନାଥପୁର ଶାସନ ନିବାସୀ ✓ କାଳନ୍ଦୀ ମିଶ୍ରଙ୍କର ତିନିପୁଅ ଓ ଦୁଇ ଝିଅଙ୍କ ମଧ୍ୟରୁ ✓ ପ୍ରସନ୍ନ କୁମାର ମିଶ୍ର ହେଉଛନ୍ତି ଜ୍ୟେଷ୍ଠ ପୁତ୍ର । ମୁଁ ତାଙ୍କର ମଧ୍ୟମ ଭାଇ ରବିନ୍ଦ୍ରନାଥ ମିଶ୍ର । ଭାଇନା ଆମର ଜଣେ ମେଧାବୀ ଛାତ୍ର ଥିବାରୁ ଶିକ୍ଷକ ଓ ଅଧ୍ୟାପକ ମାନେ ସ୍ନେହ କରୁଥିଲେ ।

ସେ ଗୋଟିଏ ଗରିବ ପରିବାରରେ ଜନ୍ମଗ୍ରହଣ କରଥିଲେ । ଆର୍ଥିକ ପରିସ୍ଥିତି ଦୁର୍ବଳ ଥିବାରୁ ଭାଇନା ପିଲାଙ୍କୁ ଟିଉସନ କରି ପାଠ ପଢୁଥିଲେ । ସେ ତିଗିରିଆ ଗତ ପବିତ୍ର ମୋହନ ବିଦ୍ୟାପୀଠରେ ଦଶମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଗାଁ ଛାଡି ବାହାରକୁ ଉଚ୍ଚଶିକ୍ଷା ପାଇଁ ଆସିଥିଲେ । ସେ ଭୁବନେଶ୍ୱର ବାଣୀବିହାର କଲେଜରେ ଇତିହାସ ବିଭାଗରେ ଏମ୍.ଏ ପାଶ କରି ସେହି କଲେଜରେ ଅଧ୍ୟାପକ ଭାବରେ କାର୍ଯ୍ୟ କରି ଅବସର ପାଇଥିଲେ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ଭାଇନା ତିଗିରିଆ ଅଞ୍ଚଳରେ ଇତିହାସରେ ପ୍ରଥମ ଡକ୍ଟର ଉପାଧି ପାଇଥିଲେ । ତାଙ୍କ ପାଇଁ ଆମେ ଏବଂ ଗ୍ରାମବାସୀ ବୃନ୍ଦ ନିଜକୁ ଗର୍ବିତ ଅନୁଭବ କରୁଛୁ ।

ଭାଇନା ଆମମାନଙ୍କୁ ବହୁତ ଭଲପାଉଥିଲେ । ଭାଇନା ମତେ ପାଠପଢାରେ ବହୁତ ସାହର୍ଯ୍ୟ କରିଥିଲେ । ମୋର ବ୍ରତପୋନୟନ ସେ ହିଁ କରିଥିଲେ । ଏମିତି କି ମୋ ପୁଅ ଝିଅଙ୍କର ପାଠପଢା ଠାରୁ ଆରମ୍ଭକରି ବ୍ରତଘର ଏବଂ ବିବାହ କାର୍ଯ୍ୟ ଭାଇନା କରିଥିଲେ । ଆମେ ପରସ୍ପରକୁ ଦେଖିଲେ ବହୁତ ଆନନ୍ଦ ଅନୁଭବ କରୁଥିଲୁ । ଭାଇନା ଗାଁକୁ ଆସିଲେ ଲୋକମାନଙ୍କୁ ବହୁତ ସମ୍ମାନ ଦିଅନ୍ତି । ଭାଇନା ଆମକୁ ଛାଡି ଚାଲିଗଲେ । ହଠାତ୍ ଚାଲିଯିବା ଦ୍ୱାରା ଆମେ ବହୁତ ମର୍ମାହତ ହୋଇ ପଡିଛୁ ଆମଘରେ ଶୋକର ଛାୟା ଖେଳିଗଲା । ଭଗବାନଙ୍କ ପାଖରେ ତାଙ୍କ ଆତ୍ମାର ସଦ୍‌ଗତି କାମନା କରୁଛୁ । ମୋ ସମ୍ମାନନୀୟ ଭାଇନାଙ୍କ ପାଇଁ ଅନ୍ତରରୁ ପଦେ ...

ମିଛମାୟା ଏହି ସଂସାରରେ
ଜନମ ମରଣ ଦେହ ସଂଗେ ଯୋଡା ନିତି ।
ହୃଦେ ଥାଉ ସଦା ତୁମ ଶ୍ରଦ୍ଧା ଭକତି ।
ଜଗତେ ରହିଥାଉ ତୁମ ଯଶ କୀର୍ତ୍ତୀ ।

ଭାଇନା ଦୁନିଆରୁ ଚାଲିଗଲେ କିନ୍ତୁ ଆମ ହୃଦୟରେ ସଦାସର୍ବଦା ଜୀବିତ ରହିଥିବେ ।



# ବଡ ଭାଇନାଙ୍କ ପାଇଁ ପଦେ

*ଇନ୍ଦୁମତୀ କର* (ସାନଭଉଣୀ)

ହେ ବଡ ଭାଇନା,
ଆପଣ ଆମ ପାଇଁ ଥିଲେ
ବର୍ଷୁା ହେଉଥିବା ଏକ କୈବଲ୍ୟ କଣିକା।
ନିଅଣ୍ଟ ପଡୁଥିବା ସ୍ୱପ୍ନର ରାତି
ମୂଲ୍ୟବାନ ହିରା, ନୀଳା ମୋତି
ଥରେ ହଜାଇ ଦେଲେ,
ପୁଣି ଆଉ କେବେ ଜୀବନରେ
ଉପଲବ୍ଧ ନ ହେବାର କରୁଣ ପରଣତି ।୨।
ଭାଇନା,
ଆପଣ ଅମପାଇଁ ଥିଲେ
ସ୍ନେହର ଅମନ୍ଦ ମନ୍ଦାକିନୀ
ସ୍ୱର୍ଗ ସ୍ୱରଧ୍ୱନୀ
ଆପଣଙ୍କ ସ୍ନେହର ସ୍ରୋତସ୍ୱିନୀରେ
ଥରେ ଅବଗାହନ କଲେ
ଆମକୁ ତୁଚ୍ଛ ଲାଗୁଥିଲା ସକଳ ଐଶ୍ୱର୍ଯ୍ୟ
ଆପଣଙ୍କୁ ନେଇ ଆମେ
ଗର୍ବୀତ ହେଉଥିଲୁ
ଆପଣଙ୍କ ପାଇଁ ଆମକୁ ଲାଗୁଥିଲା
ଆମେ ମର୍ତ୍ତ୍ୟରେ ଏକମାତ୍ର ଧନୀ
କିନ୍ତୁ ଆପଣଙ୍କୁ ହଜାଇ ଦେଇ
ଆମକୁ ଲାଗୁଛି
ଆଜି ଦୁନିଆଁରେ
ଆମେ ସବୁଠାରୁ ଭାଗ୍ୟହୀନ ପ୍ରାଣୀ।
ଭାଇନା
ଆପଣ ଥିଲେ ମୋର ଶିକ୍ଷାଦାତା
ପିତୃତୁଲ୍ୟ ଅନ୍ନଦାତା,
ଆପଣଙ୍କ ପାଖେରହି
ପାଠ ପଢିଥିଲି।
ଆପଣ ଥିଲେ ମୋର
ଭାଗ୍ୟର ବିଧାତା ।୩।
କିନ୍ତୁ,
ଆପଣ ଆଜି
ଚାଲି ଯାଇଛନ୍ତି,
ଆମ ମାନଙ୍କୁ କନ୍ଦାଇ
ଏକ ଅଦେଖା ରାଇଜକୁ
ଅସୁସ୍ଥ ଥାଇ ତଥାପି ବି ଧର୍ଯ୍ୟଧରି
ଆଜିମୁଁ ଭାବୁଛି।
ଆପଣ, ମୋ ମଥା ଉପରେ
ଆଶିର୍ବାଦ ଦେଉଥିବା
ଏକ ନିରାପଦ ଛତା। (୪)



# ସମ୍ମାନନୀୟ ଦଦେଇଙ୍କର ପ୍ରଥମ ବାର୍ଷିକ ଶ୍ରାଦ୍ଧ ଦିବସ ଉପଲକ୍ଷେ

*ଅନୁସୂୟା ମିଶ୍ର (ଝିଆରୀ)*

କଟକ ଜିଲ୍ଲାର ଗୋପିନାଥପୁର ଶାସନ ନିବାସୀ ମୋ ଦଦେଇ ସ୍ୱର୍ଗତ ପ୍ରସନ୍ନ କୁମାର ମିଶ୍ର ଜଣେ ଅଧ୍ୟାପକ, ମିଷ୍ଟଭାଷୀ, ପରୋପକାରୀ, ବନ୍ଧୁବତ୍ସଳ, କଳାପ୍ରେମୀ ଲୋକ ଅଟନ୍ତି। ତିଗିରିଆ ପବିତ୍ର ମୋହନ ବିଦ୍ୟାପୀଠରେ ପଢାଶେଷ କରିବା ପରେ ଉଚ୍ଚଶିକ୍ଷା ପାଇଁ ଭୁବନେଶ୍ୱର ଯାଇଥିଲେ।

ପଙ୍କରୁ ପଦ୍ମ ଫୁଟିବା ପରି ସେ ଆମ ଘରୁ ଜଣେ ଯୋଗ୍ୟପୁତ୍ର ହୋଇ ଆମ ଘରର ମାନ ସମ୍ମାନ ବଢାଇଥିଲେ। ସେ ବହୁ ପ୍ରତିଭାର ଅଧିକାରୀ ଥିଲେ। ସେ ଆଜି ଆମକୁ ଛାଡି ଚାଲିଯାଇଛନ୍ତି ସତ କିନ୍ତୁ ତାଙ୍କର ସ୍ନେହ ଶ୍ରଦ୍ଧାକୁ ଆଜି ବି ଆମେ ପ୍ରତି ମୁହୂର୍ତ୍ତରେ ମନେପକାଉଛୁ। ଆମର କିଛି ବି ଅସୁବିଧା ହେଲେ ଆମ ଦଦେଇ ଆମ ପାଇଁ ଭଗବାନ ସଦୃଶ ଠିଆ ହୋଇଯାଉଥିଲେ। ଯଦି ଆମେ ଶୁଣୁ ଦଦେଇ ଜେଠେଇ ଆଶୁଛନ୍ତି ଖୁସିରେ ଆମେ ତାଙ୍କ ବାଟ ଚାହିଁ ବସିଥାଉ। ଆମର ପସନ୍ଦର ପ୍ରତ୍ୟେକ ଜିନିଷ ଆଣିକି ଆସିଥାନ୍ତି। ଅଳ୍ପ ସମୟ ପାଇଁ ଆସନ୍ତି ଗାଁର ସମସ୍ତଙ୍କ ଘର ଖୁସିରେ ବୁଲି ଆସନ୍ତି। ଏବେ ବି ମୋ ଆଖିରେ ଲୁହ ଆସିଯାଏ ଦଦେଇଙ୍କ କଥା ମନେପଡିଲେ । ଗାଁରେ ବୁଲି ବୁଲି କୁହନ୍ତି ମୁଁ ମାମାକୁ ଧୁମ୍‌ଧାମରେ ବାହାକରିବି। ସତରେ ବି ସେ ତାଙ୍କର କର୍ତ୍ତବ୍ୟ ପୁରା କରିଛନ୍ତି କନ୍ୟାଦାନ କରି। ସେ କେବେ କାହାଠାରୁ କିଛି ବି ଚାହିଁନାହାଁନ୍ତି । ସମସ୍ତଙ୍କୁ ଖୁସିଦେଇକି ଯାଇଛନ୍ତି। ମୋ ଜେଜେବାପା ସଦାବେଳେ ଚାହିଁକି ବସିଥାନ୍ତି କେତେବେଳେ ପ୍ରସନ୍ନ ଆସିବ। ଦେଖିଦେଲେ ଭାରି ଖୁସି ହୋଇଯାନ୍ତି। ଆଜି ଜେଜେବାପା ନାହାଁନ୍ତି କି ଆମ ଦୁଃଖସୁଖ ବୁଝିବାକୁ ଆମ ଦଦେଇ ଆଉ ନାହାଁନ୍ତି।

ଶ୍ରୀହିନ ଦିଶଇ ତୁମ ବିନା ଘର, ସବୁ ଆଡେ ଖାଲି ଖାଲି

ଜନ୍ମ ମୃତ୍ୟୁ ପୁଣି ଚିରନ୍ତନ ସତ୍ୟ, ଏଇତ ଦୁନିଆର ରିତି।

ମୁଁ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି ମୋ ଦଦେଇଙ୍କ ଅମର ଆତ୍ମାର ସଦ୍‌ଗତି ହେଉ। ସବୁ ଜନ୍ମରେ ସେ ମୋ ଦଦେଇ ରୂପରେ ଆସନ୍ତୁ।



# କକେଇଙ୍କ ସ୍ମୃତିରେ

*ମାନିନୀ ରଥ*

ମୋ କକେଇଙ୍କୁ ଆମ ଇତିହାସ ବିଭାଗରେ PK Sir ବୋଲି ସମସ୍ତେ ଜାଣନ୍ତି। ମୁଁ ବି କକେଇଙ୍କୁ ବାଣୀବିହାରରେ ଆଡମିଶନ୍ ପରେ ଜାଣିଲି। ଖୁଡ଼ୀଙ୍କୁ ତା ପରେ। ମତେ କିନ୍ତୁ ସେମାନଙ୍କୁ ଦେଖିଲା ପରେ ଲାଗିଲା ମୁଁ ବହୁତ ଆଗରୁ ସେମାନଙ୍କ ସହ ପରିଚିତ। କକେଇ ବେଶି କଥା କୁହନ୍ତି ନାହିଁ କିନ୍ତୁ ଯେତିକି କୁହନ୍ତି ସେତିକି ରେ ହି ତାଙ୍କର ମୋ ପ୍ରତି ଥିବା ସ୍ନେହ କୁ ମୁଁ ଅନୁଭବ କରେ। ମୋ ଜାଣିବାରେ ଇତିହାସ ବିଭାଗର ସବୁ ପିଲା (may be of his spl. paper or not) ତାଙ୍କୁ ସମ୍ମାନ କରନ୍ତି ଏବଂ ଭଲ ବି ପାଆନ୍ତି। କକେଇଙ୍କର ବ୍ୟକ୍ତିତ୍ୱ ଏବଂ ହସ ହସ ମୁହଁ ସମସ୍ତଙ୍କୁ ନିଜର କରି ନିଏ । ମୋର ମନେ ଅଛି ଯେତେବେଳେ ମୋ ସାଙ୍ଗମାନେ ଲାଇବ୍ରେରି ରୁ କିଛି ବୁକ୍ ପାଇ ନଥାନ୍ତି ମୁଁ କିନ୍ତୁ କକେଇ ଙ୍କ ଠାରୁ ସେ ସବୁ ପାଇ ଯାଇଥାଏ। ଆଉ ଗୋଟେଭଲ କଥା ମୋ ପାଇଁ ଥିଲା କି, ମୋର special paper କକେଇ ହିଁ ନିଅନ୍ତି । ତେଣୁ ମୁଁ ସହଜରେ ତାଙ୍କର guidance ପାଇଯାଏ। ମୁଁ ବାଣୀବିହାରରେ ଥିଲାବେଳେ ସବୁବେଳେ ଅନୁଭବ କରେ ମୋ ପିତାମାତା (କକେଇ ଖୁଡୀ) ମୋ ପାଖରେ ଅଛନ୍ତି। ଏବେ ବି ମୁଁ ଅନୁଭବ କରୁଛି କକେଇ ଯାଇ ନାହାନ୍ତି କୁଆଡେ। ଆମ ସହିତ ଏଇଠି ଅଛନ୍ତି ଅଦୃଶ ଭାବରେ। ତାଙ୍କୁ ଆମେ ଖୁଡ଼ୀ ରାଜା ଛୁନୁ ଏବଂ ମାମା ଭିତରେ ଦେଖି ପାରିବା। ତାଙ୍କ ପାଇଁ ମୋର ଅଶୃଳ ଶ୍ରଦ୍ଧାଞ୍ଜଳୀ।



# My father in law

**Abhisek Misra**

Dr.Prasanna Kumar Mishra was a truthful person. He was a man of his words and a true gentleman. There are no words to describe him better as a person.

He was very fond of Cinema and Music. He was a tough critic too and always pointed out the finer points and lacunae in the old and the contemporary movies. He always explained his points of view with appropriate justifications.

He was an honest historian by profession and a dedicated student of Odisha history till the end of his days. His contribution for the upcoming generation is immense. His works will always be remembered and to taught.

I personally miss the moments with him when he shared that his first love was old classic movies and Dilip Kumar was his favourite actor. He believed Dilip Kumar to be the greatest actor to have ever lived and I believed it to be Amitabh Bachan. Unfortunately we could not conclude this argument and the debate remained unfinished.

He was in short a gem of a person above everything else. May his soul rest in peace...



# *JHIA RA BAPA*

***Purbasha Mishra***

***"Jhia,"*** It's been 9 months since I have not been addressed by this name....

I am penning down my feelings for Bapa for the very first time in my life. I had never thought that I would do so only after he has left us. He has always been a constant in my life as Maa. In reality, he still is! I believe the most repeated or profound actions remain in your memory forever. The most casual but prolific one for me is Bapa riding me to school on his blue Bajaj scooter. I still remember that "*vibrating scooter journey*" from home till school. As I am the youngest of all, I received an extra bit of love from him from the start which I miss badly now.

When I was small, I used to always complain of not being taken to some holiday destinations during my summer vacations. I complained about him not being involved in my life enough. To tell the truth, he was the most involved one.

It is true when they say a girl always sees her father as her first hero and expects her husband to match that standard. It is unrealistic and unfair at the same time. No matter how bad the situation is, his one hand on my head used to give me herculean strength to fight all the odds and also calmed me down at the same time. when I got angry I refused to eat food like every other children do. Bapa would be the first one to coerce me to have my meal. He would say, "*chee chee khaiba upare ragantini*". Now there is no one to console me like that!

Unequivocally almost everyone especially my brothers say that I have been spoilt by Bapa. I accept that and feel happy at least I have received that much amount of love that they can be jealous of. Equally I am jealous too when Maa loves my brothers more than me. No kidding!

Due to this love and unending support only, I could be a very strong and opinionated person in my life. None of us(me and my brothers) know diplomacy because of the example Bapa has set of being a very straightforward and outspoken person. Unknowingly he has always been my role model. I just took too long to express it and it is the biggest regret of my life.

When my son was born, he took my place in Bapa's life. **Nishaan was his life!** For Nishaan Bapa was his favorite person. I had never imagined that I would ever use *"was"* for Bapa. I still don't understand why one must put someone in the past tense just because they are bodily absent? When the soul connection is forever!

We (me and my brothers) have inherited his love for old Bollywood movies and songs. He lives on in those soulful melodies of Rafi, Talat Mahmood and Mukesh. Where else can he go? He is with us while we hum the tunes of *"Tu kahan yeh bata, iss naseeli raat mein" or watch* a Dilip Kumar movie.

I am probably the last one to give my article for Bapa. The reason being, I could never go past the first line for months. I would sob incessantly till I am blinded by tears. Finally, after two months I have mustered some courage.

You held my hand and taught me how to walk. You were there to hold me when I was about to fall. You pulled me up when I was down and out.

I feel this now, but I could not say this to you while I could see you hearing it. That I Love you so much!

I know you are with me always Bapa!

**Jhia**



# ମଉସାଙ୍କ ସ୍ମୃତିରେ

*ଅବିନାଶ ପରିଡା*

"ଜାତସ୍ୟ ହି ଧ୍ରୁବ ମୃତ୍ୟୁ" ମନୁଷ୍ୟ ମରଣଶୀଳ। ଏହା ସୃଷ୍ଟିର ନିୟମ। ବହୁ ବ୍ୟକ୍ତି ସଂସାରରୁ ବିଦାୟ ନେଇ ସାରିଥିଲେ ମଧ୍ୟ ସେମାନଙ୍କର ତ୍ୟାଗ ପ୍ରେରଣାଦାୟକ ଅନୁଚିନ୍ତା ଓ ଜୀବନ ଧାରା ସେମାନଙ୍କୁ ଅଦ୍ୟାବଧି ଅମର କରି ରଖିଛି। ଭଲ କର୍ମ କଲେ ତା'ର ସ୍ମୃତି ରହିଯାଏ। ତେଣୁ ଭାଗବତରେ ଏହି ମହାନ ଉକ୍ତି ହେଉଛି-

**କାଳରେ ବଶ ଏ ଜଗତ**
**ପ୍ରାଣୀ ଏ କାଳର ଆୟତ**
**ମର୍ତ୍ତେ ମଣ୍ଡଳେ ଦେହ ବହି**
**ଦେବତା ହେଲେ ହେଁ ମରଇ**

ପୃଥିବୀର ଶ୍ରେଷ୍ଠ ଦାର୍ଶନିକ ଦାଓନିଷ ଦିବାଲୋକରେ ଲଣ୍ଠନ ଧରି ଭଲ ମଣିଷ ଖୋଜିବା ପ୍ରକ୍ରିୟା ଆଜିକା ସମାଜରେ ସମ୍ପୂର୍ଣ୍ଣ ଭାବରେ ଲୋପ ପାଇଗଲାଣି। କାରଣ ଭଲ ମଣିଷର ଗୁଣାବଳୀ, କାର୍ଯ୍ୟଦକ୍ଷତା, ସେବା ମନୋଭାବ, ତ୍ୟାଗ, ପରୋପକାରିତା ସ୍ନେହ ପ୍ରେମ ଓ ସର୍ବୋପରି ମଣିଷ ପଣିଆର ବିଶ୍ଳେଷଣ ଆଜିର ଭାଷାକୋଷରୁ ବିଲୁପ୍ତ ପ୍ରାୟ କିନ୍ତୁ ଆମେ ସେହି ଭାଷାକୋଷ ପୁଣି ଥରେ ସାଉଁଟିବା, ତନ୍ନ ତନ୍ନ ଖୋଜିବା ଓ ସେଇ ଲୋକର ସାଙ୍ଗସାଥୀ, ପରିବାର ଆତ୍ମୀୟସ୍ୱଜନ ବନ୍ଧୁ ପରିଜନ ଏବଂ ତା'ର ସାମାଜିକ କ୍ରିୟାକର୍ମକୁ ବିଶ୍ଳେଷଣ କରି ଔପଚାରିକତା ଦୃଷ୍ଟିରୁ ସେ ଭଲ ମଣିଷ କିମ୍ବା ଖରାପ ମଣିଷ ବୋଲା ବିବେଚନା କରି ପାରିବା। ସେତେବେଳେ ଭଲ ମଣିଷ ପାଇଁ ଭାଷାକୋଷ ଖୋଜିବା ଥିଓରିକୁ ପଛକୁ ପକାଇ ତା ପାଇଁ ଆମେ, ତମେ ଓ ଅନ୍ୟମାନେ ମିଶି ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିବା। ତା'ର ମହାପ୍ରସ୍ଥାନ ପରେ ତା'ର ଅପାସୋରା ବ୍ୟକ୍ତିତ୍ୱ, ଜୀବନାଦର୍ଶ ଓ କର୍ମମୟ ଜୀବନ ଆମ ପାଖରେ ଝଲସି ଉଠି ସେ ଭଲ ମଣିଷ ବୋଲି ଆଖ୍ୟାୟିତ ହୋଇ ଉଠିବ।

ଧନ, ମାନ, ଜନ, ମୋହ, ମାୟା , ଆସକ୍ତି, ମୃତ୍ୟୁ ଭଳି ଧ୍ରୁବ ସତ୍ୟ ପାଖରେ ଧ୍ୱଂସ ପାଇ ତା'ର ମଣିଷପଣିଆ ସର୍ବୋତ୍କୃଷ୍ଟ ସ୍ଥାନ ମଣ୍ଡନ କରି ସେତେବେଳେ ତା''ର ସେହି ଆବର୍ତ୍ତମାନର ଗୁଣାବଳୀ ସ୍ନେହ, ପ୍ରେମ, ମମତା, ମିଷ୍ଟଭାଷ୍ୟତା, ଦୃଢ ମନୋବଳ ନିଷ୍କପଟତା ଓ ଖୋଲା ହୃଦୟର ସନ୍ଦେଶ ସମସ୍ତଙ୍କ ହୃଦୟରେ ଟିକେ ଜାଗା ମାଡି ବସିବ। ଏହିପରି ଏକ ଅସାଧାରଣ ବ୍ୟକ୍ତିତ୍ୱ ଆଜି ତାଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକରେ ମନେ ପଡନ୍ତି। ସେଇ ମିଷ୍ଟଭାଷୀ ମେଳାପି ପରୋପକାରୀ ନିଃସ୍ୱାର୍ଥପର ତ୍ୟାଗୀ ମଣିଷଟି ହେଉଛନ୍ତି ସ୍ୱର୍ଗତ ପ୍ରସନ୍ନ କୁମାର ମିଶ୍ର, ମୋ ମଉସା।

**ସୁନ୍ଦର ପରିଭାଷାଟି- "କେହି ରହିନାହିଁ ରହିବେ ନାହିଁଟି ଏ ଭବ ରଙ୍ଗ ଭୂମି ତଳେ,**
**ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡିବେ କାଳ ବଳେ"**

ଜନ୍ମ ପରେ ମୃତ୍ୟୁ ନିଶ୍ଚିତ ସତ୍ୟ, କିନ୍ତୁ ଆସିଥାଏ ଅସରନ୍ତି ଲୁହର ପର୍ବରେ। ସେତେବେଳେ ମହାପ୍ରସ୍ଥାନର ଅଫେରନ୍ତା ବାଟର ବାଟୋଇ ଅଦୃଶ୍ୟ ପଥର ମହାନାୟକ ଆଉ ଅଜଣା ରାଇଜର ଅଭୁଲା ମଣିଷ ଜନ୍ମ ଆଉ ମୃତ୍ୟୁ ମଧ୍ୟରେ ଛାଡି ଯାଇଥିବା ସ୍ନେହାନୁବନ୍ଧନ, ମାୟାନୁବନ୍ଧନର ସ୍ମୃତି ଯାହା ତାଙ୍କୁ ମନେ ପକାଇବାର ଖୋରାକ। ତେଣୁ ଏହା ସତେ କୁହାଯାଇଛି- ଚଳଂ ଚିତ୍ତ ଚଳଂ ଜୀବନ ଯୌବନ ଚଳାଚଳ ସର୍ବମିଦଂ କିର୍ତ୍ତୀ ଯସ୍ୟ ସ ଜୀବତି।" ତେଣୁ ସେଇ ମଣିଷଟି ହେଉଛନ୍ତି ମୋର

ମଉସା ସ୍ୱର୍ଗତ ପ୍ରସନ୍ନ କୁମାର ମିଶ୍ର। ମଉସା ବାଲ୍ୟକାଳୁ ଅଧ୍ୟୟନ ପ୍ରତି ରୁଚି ରଖି ଅଭାବ ଅନାଟନକୁ ସାମ୍ନା କରି ନିଜକୁ ଶିକ୍ଷା ବିଭାଗରେ ଜଣେ ଅଧ୍ୟାପକ ଭାବେ ଆତ୍ମ ନିଯୁକ୍ତି କରିବା ତାଙ୍କର ଜନ୍ମଜାତକର ସୌଭାଗ୍ୟ କୁଣ୍ଡଳୀ। ଇତିହାସ ବିଭାଗର ଅଧ୍ୟାପକ ଭାବେ ନିଯୁକ୍ତି ପାଇ ପ୍ରଫେସର ହିସାବରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଅବସର ଗ୍ରହଣ କରିଥିଲେ। ତାଙ୍କର ଧର୍ମପତ୍ନୀ ଶ୍ରୀମତୀ ସତ୍ୟଭାମା ପତି ମଧ୍ୟ ଇତିହାସ ବିଭାଗର ଅଧ୍ୟାପକ ଭାବେ ନିଯୁକ୍ତି ପାଇ ପ୍ରଫେସର ହିସାବରେ ଅବସର ଗ୍ରହଣ କରିଛନ୍ତି । ମୋ ମଉସା ଥିଲେ ଜଣେ ଅମାୟିକ ବ୍ୟକ୍ତି। ସେ ଯେପରି ସରଳ ସେହିପରି ଜଣେ ସଚ୍ଚୋଟ କର୍ମଚାରୀ ମଧ୍ୟ। ସେ ଥିଲେ ନିଷ୍କପଟ, ଦୃଢମନା ଓ ପରୋପକାରୀ। କର୍ମ ଥିଲା ତାଙ୍କ ପାଇଁ ଭଗବାନ। ପରିବାର ପାଇଁ ତାଙ୍କର ଉତ୍ସର୍ଗୀକୃତ ମନୋଭାବ ରହିଥିଲା। ସର୍ବୋପରି ତାଙ୍କର ଆଦର୍ଶ, ନୀତି ଓ ଚିନ୍ତାଧାରା ଉଚ୍ଚକୋଟିର ଥିଲା। ମଉସାଙ୍କ ବିଷୟରେ ଯେତେ ଲେଖିଲେ ବି ଲେଖାର ଶେଷ ହେବନି।

ହଁ ମୁଁ ମଉସାଙ୍କର ନିଜ ପୁତୁରା ନୁହେଁ। ମଉସାଙ୍କ ବଡ଼ ପୁଅ ସବ୍ୟସାଚୀ ମିଶ୍ର (ରାଜା) ହେଉଛି ମୋର ଘନିଷ୍ଠ ବନ୍ଧୁ। ଆମେ ଦୁହେଁ ବିଜେବି କଲେଜରେ ସାଙ୍ଗ ହୋଇ ପଢିବା ଦିନରୁ ଘନିଷ୍ଠ ବନ୍ଧୁ ଭାବେ ଆଜି ପର୍ଯ୍ୟନ୍ତ ରହି ଆସିଛୁ। ସେଇ ବନ୍ଧୁ ହିସାବରେ, ମୁଁ ଆଜି ପର୍ଯ୍ୟନ୍ତ ରହି ମଉସାମାଉସୀଙ୍କର ଶ୍ରଦ୍ଧା ଭାଜନ ହୋଇ ଆସିଛି। ମଉସାଙ୍କ ସାଙ୍ଗରେ ମୋତେ ଯିଏ ଦେଖନ୍ତି ତାଙ୍କର ପୁଅ ବୋଲି କହନ୍ତି। ମଉସା ମଧ୍ୟ କହନ୍ତି ହଁ ଅବିନାଶ ମୋର ପୁଅ। ମଉସା, ମାଉସୀ ତାଙ୍କର ଦୁଇ ପୁଅ ଓ ଜଣେ ଝିଅକୁ ଯେଉଁ ସେହ୍ନ ମମତା ଦିଅନ୍ତି ମୋତେ ମଧ୍ୟ ସେଇ ଦୃଷ୍ଟିରେ ଦେଖନ୍ତି। କଥାରେ ଅଛି 'Good deeds are never lost' ସୁକର୍ମର ବିନାଶ ନାହିଁ। ମଉସାଙ୍କ ତିରୋଧାନ ପ୍ରାୟ ଏକ ବର୍ଷ ହୋଇଗଲାଣି। ତାଙ୍କର ନଶ୍ୱର ଶରୀର ବିଲୀନ ହୋଇଛି ସତ କିନ୍ତୁ ମହନୀୟ କାର୍ଯ୍ୟଦ୍ୱାରା ସେ ଅନେକ ଜନ ମାନସରେ ଆଜି ବି ସ୍ମରଣୀୟ। ସେହି ଗତାୟୁ ଆତ୍ମା ଉଦ୍ଦେଶ୍ୟରେ ମୋର ଶତ ଶତ ପ୍ରଣାମ। ଶେଷରେମୋର ଏତିକି ପ୍ରାର୍ଥନା ତାଙ୍କର ଆତ୍ମା ଜଗନ୍ନାଥଙ୍କ କୃପା ପାଇ ଚିର ଶାନ୍ତି ଲାଭ କରୁ। ମୋ ମଉସା ମୋତେ ବହୁତ ଭଲ ପାଆନ୍ତି। କିନ୍ତୁ ଦୁର୍ଭାଗ୍ୟ ଭଗବାନ ତାଙ୍କୁ ମୋ ଠାରୁ ଛଡାଇ ନେଲେ। ଆଉ ଏ ଦୁନିଆରେ ମଉସା ବୋଲି ଗୋଟି ଶବ୍ଦ ଓ ଆଶୀର୍ବାଦ ମୋ ମୁଣ୍ଡ ଉପରୁ ଚାଲିଗଲା। ଶେଷରେ ମୁଁ ଏତିକି ଲେଖିବି :



ସାର୍ଥକ ଜନମ, ସାର୍ଥକ ମରଣ
ସାର୍ଥକ ଜୀବନ ପାଇଁ
ଝୁରେ ମାଟି ମାଆ ଅଗଣିତ ମନ
ତୁମ ଯଶ, କିର୍ତ୍ତୀ ଗାଇ
ତୁମ ଆତ୍ମାଫୁଲ ଅମ୍ଳାନ ରହିବ
ଗୀତା ଭାଗବତ ହୋଇ
ମାଟି ମାଆ ସ୍ୱପ୍ନ ତା କୋଳେ ଫେରିବ
ନୂଆ ଏକ ରୂପ ନେଇ

ମୋ : ୯୮୬୧୨୩୩୩୩୩



# A Beautiful Spirit!

*Nitu Gupta*

From humble beginnings, he rose to great heights,
A skilled orator, his words polished and bright,
Distinguished and upright, loved by all,
A true inspiration, he blessed all.

With hard work and perseverance, he found success,
Living a life of simplicity, he lived with finesse,
His achievements made the family and Odisha proud,
Kindness and generosity his hallmark and shroud.

A proud Odia, he mentored many,
Guiding with his values and knowledge,
His legacy lives on, his memory cherished by plenty,
A true gentleman, a spirit that will never fade, never age.

We remember him with deep admiration and emotions,
A life of principle, courage, and pure intentions,
For he was like a father, revered with deep devotion
With Love and gratitude and deep admiration.

A life well-lived, a true success
A life of service, of learning, and of giving; a beautiful process
A Beautiful Spirit!





# SUN BRIGHT SMILE

*Aan Swastik Mishra*
(Puchu)

When the word grandfather is uttered, the image of a jovial man, hairs greying or already greyed, age old wrinkles on his face only serving to deepen his loving smile as he looks upon his grandchild comes to mind. My own grandfather was the very embodiment of the word from my perspective. To his last day his smile never faltered, even once, when looking upon me.

From the very start, t was never introduced to the historian Prasanna Kumar Mishra, the colleague in the department that everyone was happy to see, the brain whose computing had been geared towards the discovery of the origins of his own people and culture that led to the many speeches he delivered, by which he is most remembered. The man I knew was only my 'Jeje'. A simple man who lived a simple life with his family in a simple house, ate simple food and wore simple clothes and fulfilled to the utmost his simple dream of keeping his family happy.

Needless to say that when I look upon the stacks and stacks of books and manuscripts that belonged to him, locked away in two steel almirahs and a glass cabinet, t am bewildered. The amount of time and effort it must have taken to read and analyse the pages and the knowledge and acumen acquired through the process must needs be one of the best. A picture of his, taken while shook hands with sir Janki Vallabh Patnaik serves as testament to my claims.

As all things inevitably end, so did my time spent with my grandfather come to a close. A coming of age ceremony, the "bhrataghara" is supposed to celebrate a brahmin child's start towards the pursuit of knowledge. It was my grandfathers wish to organize it, although it had been delayed due to some unfortunate circumstances.as the ceremony dates came closer my apprehension started to build up. I had been nervous about shaving my head though I had always expressed support of upholding customs. If my hair stood in the way of my grandfathers wish it would have to go. As it turns out though, my apprehension was misplaced, my grandfather did not wish to see my hair go and thus I was saved. My grandfather had always been quick on the uptake and must have sensed my nervousness about the whole affair. A few months after the celebration ended, I would not be able to have a similar experience ever again.

The date was June 27th, 2022. My mother and I were at the hospital. My grandfather was in an ICU ward, warranting the visit of two other concerned parties, namely, my father's sister and his friend. As we waited for the elevator, my "bua" looked shaky, thus I nudged my mother towards her. It had been almost a week since my grandfather had suffered a brain stroke, the resulting fall had lead to several blood clots in the brain area. That and the fact that he had also contracted COVID-19 had made his operation much more difficult than it was supposed to be. As such the only question which remained was this: How much time does he have left? On a previous visit I had been unable to demand my entry into his ward, shaken as I was with the news. This time would be different, however, as I made up my mind to go, and yet there was a niggling fear that seated itself in my chest, making my breathing erratic. This sense of foreboding only turned out to be justified as the doors slid open and my grandmother was rushed out by my "kaka." In all the pandemonium I was unable to catch a single coherent word. As the newformed crowd rushed to my grandparents' house I saw my father waiting at the gate, eyes downcast. It was only when my little cousin asked about my grandfather's whereabouts and my grandmother was unable to answer that I realised. My grandfather was dead.

At 11:42 pm on the same day I returned with my father to my grandparents' house. A friend of his, whose name I was unfortunately unable to gather, did us the courtesy of dropping us home. My father's shaved head was not a sight that sat well with me, neither did the crematorium we visited. Indeed I could only say that at that moment, there was no place like home. A cruel irony had lain infront of me but hours before, an irony that, if not for the circumstances that entailed its creation, would have made me laugh. My grandfather, Mr. Prasanna Kumar Mishra, lay unmoving atop a funeral pyre. The man who had been full of life who would walk faster than me as he traversed the colony in which he lived, who would help me into my clothes, who would constantly find new snack centres for me to try, was put to flames, to return to where he had come from. Truly the gods whichever existed were cruel for both what they 'giveth' and 'taketh away'.

I observed that I started to grow delusional as time passed on. Each time I would visit my grandparents' house I would be greeted by a vision of my grandfather holding up a cup of tea as he read the newspaper, beckoning me to join him. I would call out in joy, only to find strangers stare as I hollered at an empty gate and passageway, leading unto the house. My grandfathers one wish had been to see his family happy, as I have previously stated. As such my weak and fragile mindset was unacceptable. He would have broken into a frown had he seen us in this state. All the tears which I had refused to shed at his funeral, not allowing even one moment of weakness show to anyone, dry up in the sockets of my eyes as I only look forward now, never turning back. When I came to know of this publication that was to be made in lieu to his memory, although admittedly I was doubtful that I would do a good job of it, I decided to immortalize the side of his that was available only to me. These last words should summarize my writings-

**Of wrinkelled face,**
**Compassion which outran others by a mile,**
**He had a deep loving gaze,**
**And a Sun Bright Smile.**





# THE FATHER I WILL NEVER BE

***Sabyasachi Mishra***
(Baiya)

The mustard green Phillips transistor somehow balanced itself between the knot of a white lungi and the hint of swell of the belly as the owner lay on his back on the teakwood bed after a Sunday lunch.

The road from the radio to the face was obstructed by a dense overgrowth of black forest, or at least that is what it seemed to me as I lay with my cheek on that satisfied belly. From that angle I could see a white rope cutting through the black forest and flowing down to where I lay only to bend and fall off out of my sight just before it reached me.

To my left, snuck into a hairy armpit was a little plump porcupine with its face turned away from me looking upwards. I could discern a little smile on its lips. I followed the porcupine's gaze and came upon a dark handsome face. I remember noticing the black mole on the side of his nose, the tiny little gap between the upper front two teeth and the thick wavy hair across his temple. His attention was divided between the porcupine, me and the strong nasal tone of the radio announcer who I later learned to be Ameen Sayani. The porcupine was my little brother, a cute bundle of joy whose hair always stood to attention no matter what. The handsome, hairy, dark man was my father. This is my first vivid memory of him.

The RMI Roadmaster Gents with a hand woven bamboo basket hooked on to the handle a little school bag having two front pockets and a red water bottle was a regular view for many months as my father pedalled me away to Mrs Bhagwanloo's school in Acharya Vihar. He would keep whistling almost all the way and at times would tell me the name of the song it belonged to. They were all in some foreign language, Hindi. I could not have cared less but I fell in love with them because my father loved them. One of them songs was Kisiki Muskurahaton Pe Ho Nisaar. In fact my torrid love affair with hindi films and its music started as an infatuation on that bicycle with my father. With the entry of Rohini Delux Black & White television and with it Chitrahaar and Sunday movies cemented my love for Hindi cinema. Whatever little doubts I may have had were wiped off by the regular quiz conducted by my father regarding each song, its music director, writer, the movie it belonged to, year of its make and tit bits of the making.

I am, I mean I was a bit on the adventurous side during my childhood well into my youth. On one of these adventures I was awestruck with the beauty of the lotus flower. There were in abundance in a little lake, now non-existent, in the Utkal University campus behind the gymnasium. One day I ventured into the lake with a couple of daredevil friends in the hope of procuring a few of them lotuses. My friends' daring vanished after a few meters of ingress and was replaced by their devilishness. I turned to see both of them scampering out of the water and in the distance I could make out the shape of a man in white approaching on a bicycle. I was annoyed at the betrayal of my friends but did not give up on the lovely flowers. I waded a few more feet and grabbed one of the stems just as I felt a strong grab of my hair. I turned to see the violently angry face of my father. He dragged me out by my hair and placed me on the cycle. Nothing was spoken till we reached home. At home he took off his two and half inch cow hide belt and smacked me. I

don't recollect how many times the belt went up and down before I found myself tied to the bedpost with an electric heater coil. What was surprising was that the lotus was still in my left hand. I wonder till today as to how it survived the ordeal. Needless to say I was absolutely alright as soon as the thrashing stopped but my father was shaken up for a few days. I could gauge from his furtive looks that he was angry having had to hit me, he was worried about something else which I couldn't make out then but till recently when I saw my son ride a scooter for the first time. By the way I learned to swim at the age of 17, almost 8 years after this incident.

He was not the kind of a father to check in on his son in the school to gauge his progress. I never wondered why, perhaps because it suited me. It however did not stop me from forging his signature whenever I happened to be reprimanded or suspended at school. I have always wondered his reaction if he had ever found out about my truant behaviour. As I reflect on the subject I realise that he never checked on my studies even at home. He however did display a certain partiality to my prowess or the lack of it over English. I remember him checking on the chapters, poems, novels, dramas, and essays etc which were a part of my curriculum and on those which were not and I had plenty of them. I could sense that he was happy that I was reading more outside of my curriculum. I have always suspected him leaving an old, hardbound and dusty copy of a masterpiece called "The Spy Who Came in from the Cold" near my bed. Subsequently I would come across the History of the World, My Experiments with Truth, Othello and many others which would make their earth landing next to where I slept.

My father was an extremely fair person. He was never partial in his affection for anyone. The only time I saw him wavering in his attention was when he brought back my new born sister from the hospital. Everything was rounded about her, her face, her tiny hands and legs and even the hair tried hard to form a circle. There was a distinct spring in my father's steps. I felt he spent a bit too much of his time looking at her and that he did till his last breath. This new event brought about a certain change in the equation where I was a variable. Perhaps after a few months of my sister bursting on to the scene or a year later, my father sitting in the balcony sipping his tea announced out of the blue that I was now the eldest amongst the siblings and thus I was to behave and conduct myself with a huge amount of responsibility. "Jyastha putra kula sreshtha" is what he told me to strive towards. It was an unknown destination just as in Start Trek which was aired on TV in those days. I took him very seriously. I deduced and believed that from then on I would have to share my preferred food, sweets and mangoes three ways.

Father was not a chatty kind of person but he could speak for hours together on subjects of his interest. It was difficult to find common ground for a topic of discussion when you have an age gap of 33 years but I managed to snatch 15-20 mins of undivided attention on topics related to cinema and music. The frequency of these conversations thinned out and almost trickled down to once or twice a year. The conversations had trickled out in general. And now they are like a cured chronic toothache which one misses, the smell of a dish from a restaurant which does not exist anymore or the warmth of a sun dried blanket in the winter which you try to recollect in the mid summer.

In the 1980s, a 5.30 pm scene in our home through the lens would be that of a youngish couple in the balcony sitting on "hostel" chairs with a small stool in between placed on which were two cups of tea and some Marie gold biscuits. The couple would be engrossed in their chats but you could safely assume each of them had an eye on the little playground below where their children were. The evenings would see the couple walk together for some groceries or just a long walk into the campus of RRL. These balcony sit outs gave way to portico sit outs, the little playground gave way to the roads from which the children were expected to come home. But the couple always remained together in their tea, watching and waiting for 46 years. Now only one has the tea, watches and waits.

Over the years I learnt of the numerous stories of his life, a few happy but mostly painful. I would not like to pen them here for to me the pain which he underwent is precious and sacred. In my 46 years never have I heard him share his pain or let it spill on to his children. He wanted it that way and I shall respect that. His love lived through his wife, children and grandchildren. Towards the end his very existence was for the time spent with his grandchildren. His last sacrifices were for them. The physical and emotional effort he put in for his grandchildren is a subtle yet in your face hint like the smell of lavender for us who are left behind to sort out our priorities in life. My father was a teacher to his last breath and it is not his fault that I am not a bright student.

But Dad, I will attend your classes to my last breath in the hope to become the father that I can never be.





# ଜୀବନ ସଂଧ୍ୟାରେ ସ୍ମୃତିର ରୋମନ୍ଥନ ।

*ସତ୍ୟଭାମା ପତି*

ଶ୍ରୀମଦ୍ ଭଗବତ ଗୀତାରେ ବର୍ଣ୍ଣିତ ଅଛି- "ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହଣାତି ନରୋଽପରାଣି । ତଥା ଶରୀରାଣୀ ବିହାୟ ଜୀର୍ଣ୍ଣାନି ଅନ୍ୟାନି ସଂଯାତି ନବାନି ଦେହୀ ।" ଯେପରି ବ୍ୟକ୍ତିପୁରାତନ ପୋଷାକ ତ୍ୟାଗକରି ନୂତନ ପୋଷାକ ପରିଧାନକରେ; ଠିକ୍ ସେହିପରି ଜୀବନର ଅନ୍ତିମ କ୍ଷଣରେ ଆତ୍ମା ପୁରାତନ ଅଦରକାରୀ ଶରୀରକୁ ତ୍ୟାଗକରି ନୂତନ ଶରୀର ଗ୍ରହଣ କରେ । ଏହା ହେଉଛି ଏକ ସର୍ବସିଦ୍ଧାନ୍ତ ସତ୍ୟ, ତଥାପି ମନୁଷ୍ୟ ନିଜର ଆତ୍ମୀୟସ୍ୱଜନଙ୍କର ଅନ୍ତିମ କ୍ଷଣରେ ଗଭୀର ଦୁଃଖରେ ମ୍ରୀୟମାଣ ହୋଇପଡେ । ସେହିପରି ମୋ ପାଇଁ ଚରମ ଦୁଃଖଦ ସମୟ ଥିଲା ୨୦୨୨ ମସିହା ଜୁନ୍ ୨୭ ତାରିଖ ଦିନ । ତୁମର ମାନବଜୀବନରୁ ଚିରବିଦାୟ ନେଇ ମୁକ୍ତି ପଥରେ ଅଗ୍ରସର ହେଲା ବେଳକୁ ମୋ ଜୀବନରେ ଆସିଲା ଆକାଶ ପାତାଳ ପରିବର୍ତ୍ତନ CARE ହସ୍ପିଟାଲର ଡକ୍ଟରଙ୍କ କହିବା ଅନୁସାରେ ଅପରେସନ୍‌ର ୭୨ ଘଣ୍ଟା କଟିଗଲେ ତୁମେ ବିପଦ ମୁକ୍ତ ହୋଇପାର । ୨୭ ତାରିଖ ଦିନ ଦୁଇଟା ବେଳେ ସେ ସମୟ ଅତିକ୍ରାନ୍ତ ହେଲାପରେ ପୁଅଝିଅଙ୍କ ସହ ମୁଁ ହସ୍ପିଟାଲ୍ ଯାଇଥିଲି । ଭାବିଥିଲି ତୁମେ ଧୀରେ ଧୀରେ ସୁସ୍ଥ ହେବ ଏବଂ ଆମ୍ଭମାନଙ୍କୁ ଦେଖିବ । ହେଲେ I.C.U ରେ ତୁମ Bed ପାଖରେ ପହଞ୍ଚିଲା ବେଳେ ପୁଅକୁ ଡାକ୍ତର ବାବୁ କହୁଥିବାର ଶୁଣିଲି "ମା ଙ୍କୁ କାହିଁକି ଆଣିଲ ?" । ମୁଁ ସବୁ ବୁଝିପାରିଲି ଏବଂ ଜାଣିଲି ତୁମେ ଆରପାରିରେ ଯାତ୍ରୀ ହୋଇଗଲା ସେହି ସମୟରେ (ତାହାଥିଲା ଅପରାହ୍ନ ୪ଟା ୧୦ ମିନିଟ୍) ମତେ ସବୁ ଅନ୍ଧାର ଦିଶିଲା ଏବଂ ଲାଗିଲା ତମେ ଯେମିତି ମତେ ଅପେକ୍ଷା କରିଥିଲ ଯିବାପାଇଁ, କିଛି ନ କହି, ଆଖିନଖୋଲି ଚୁପ୍‌ଚାପ୍ ଆରପାରିକୁ ଚାଲିଗଲ । ମୋ ଆଖି ଆଗରେ ତୁମର ନିଶ୍ଚଳ ଶରୀର ଏବଂ ମୁଦା ଆଖି ଦେଖି ମୋ ଆତ୍ମାକୁ କେତେ କଷ୍ଟ ହେଇଥିବ ତୁମେ ଟିକେବି ବୁଝିବାକୁ ଚେଷ୍ଟା କଲନାହିଁ । ତୁମକୁ ବହୁତ ଭକ୍ତି ଏବଂ ସ୍ନେହ କରୁଥିବା ତୁମର ପିଲାମାନଙ୍କୁ କେମିତି ବୁଝେଇବି ଯେ ସେମାନେ ଏବେ ବାପା, ଜେଜେ ଓ ଅଜାଙ୍କ ସ୍ନେହରୁ ସାରା ଜୀବନ ବଂଚିତ ହୋଇଗଲେ । ଏକାଠି ଜିଇବା ମରିବାର ପ୍ରତିଶ୍ରୁତି ସବୁ ଭାଙ୍ଗିଦେଇ ଅଫେରା ରାଇଜର ଯାତ୍ରୀ ହୋଇଗଲା ବଞ୍ଚିଥିବା ପର୍ଯ୍ୟନ୍ତ ଏକୁଟିଆ କରିଦେଲ ମତେ । ବଞ୍ଚିବାର ସମସ୍ତ ମୋହ ଆଖିର ଲୁହରେ ବନ୍ଦୀ ହେଇ ଗଲା କିନ୍ତୁ ସବୁ ସ୍ମୃତିକୁ ସମ୍ବଳ କରି ବଞ୍ଚିବାକୁ ପଡ଼ିବ । ଜୀବନର ଏଇ ଅଶୃଳ ସଂଧ୍ୟାରେ ଅତୀତକୁ ସ୍ମରଣ କରିବା ଅତୀବ କଷ୍ଟସାଧ୍ୟ । ତଥାପି ସ୍ମରଣ କରିବାକୁ ଚେଷ୍ଟା କରୁଛି, କାରଣ ଏହାହିଁ ତୁମ ପାଇଁ ପ୍ରକୃତ ସ୍ମୃତି ଅର୍ଘ୍ୟ ହୋଇପାରିବ । ଆମ ଦୁଇଜଣଙ୍କର ପ୍ରଥମ ସାକ୍ଷାତ ୧୯୭୫ ମସିହାରେ ବାଣୀବିହାରର ଇତିହାସ ବିଭାଗରେ admission ନେଲାବେଳେ ହୋଇଥିଲା । ମୋର ଅଜା ସ୍ୱର୍ଗତ ପଞ୍ଚାନନ ଦାଶ ତୁମ ସହିତ ପରିଚୟ କରାଇ ଦେଇଥିଲେ ଏବଂ ଆବଶ୍ୟକ ହେଲେ ତୁମର ସାହାର୍ଯ୍ୟ ନେବାକୁ କହିଲେ । ତୁମେ ସେତେବେଳେ ଇତିହାସ ବିଭାଗରେ Research Asst. ଭାବେ କାର୍ଯ୍ୟରତ ଥିଲ ଏବଂ Department Library Charge ରେ ଥିଲ । ତେଣୁ ସବୁ ପିଲାମାନେ ତୁମ ସହିତ ପରିଚିତ ଥିଲେ ଏବଂ ମୁଁ ମଧ୍ୟ Library ରୁ କିଛି ବହି ସଂଗ୍ରହ କରିଥିଲି । ମୋର ବ୍ୟକ୍ତିଗତ ଜୀବନ କିନ୍ତୁ ଭିନ୍ନ ମୋଡଦେଇ ଗତି କରୁଥିଲା । ନିମ୍ନ ମଧ୍ୟବିତ୍ତ ପରିବାରରୁ ଆସିଥିବାରୁ ପାଠପଢା ପାଇଁ ସମ୍ବଳ ମୋ ପାଖରେ ନଥିଲା । Graduation ପରେ ମୁଁ ପାଉଥିବା Scholarship କଟିଯାଇଥିଲା । ଏବଂ କୌଣସି ପ୍ରକାର ଆର୍ଥୀକ ସମ୍ବଳ ମୁଁ ଯୋଗାଡ଼ କରି ପାରିଲିନି । Hostel Admission ମଧ୍ୟ ହୋଇ ଯାଇଥିଲା । ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ମୋର ପାଠ ପଢ଼ା ଜାରି ରଖିବାର ସମସ୍ତ ଇଚ୍ଛା ମଉଳି ଗଲା ଏବଂ ମୁଁ

ଗାଁ କୁ ଫେରିଯାଇ କୌଣସି ଚାକିରୀର ସନ୍ଧାନ କରିବାକୁ ସ୍ଥିର କଲି। ମୋର Roommate ସ୍ୱର୍ଗତା ନିହାରୀକା ଦାସ ହାତରେ ସବୁତକ ବହି ତୁମ ପାଖକୁ ଫେରାଇ ଦେଇ ଗାଁକୁ ଚାଲିଗଲି। ସେଇ ସମୟରେ ବହିର ଲିଷ୍ଟ ସହିତ ଗାଁକୁ ଫେରିଯିବାର କଥା ଲେଖି ଛୋଟିଆ ଚିଠିଟିଏ ଲେଖିଥିଲି। ଯାହାତୁମେ ଏପର୍ଯ୍ୟନ୍ତ ସାଇତି ରଖିଛ। ଠିକ୍ ଏହାର ଦୁଇଦିନ ପରେ ଗାଁରେ ମୋ ବଡ଼ମା ମତେ ଡାକିଲେ ଏବଂ କହିଲେ- "ମା ରେ ଦେଖିଲୁ ଭୁବନେଶ୍ୱରରୁ ଜଣେ ବାବୁ ତତେ ଖୋଜୁଛନ୍ତି।" ମୁଁ ଆଶ୍ଚର୍ଯ୍ୟ ହେଲି ମତେ କିଏ କାହିଁକି ଖୋଜିବେ ? ମାତ୍ର ବାହାରକୁ ଆସି ଦେଖେତ ତମେ। ସେଦିନର ତୁମ ମୁହଁର ସେଇ ଆତ୍ମତୃପ୍ତିର ହସ ଏ ପର୍ଯ୍ୟନ୍ତ ମୋ ମନରେ ଜୀବନ୍ତ ହୋଇ ରହିଛି। ଭୁଲିଗଲି ତୁମକୁ ଘରକୁ ଡାକିବାକୁ । ହସି ହସି "ମତେ ଘରକୁ ଡାକିବନି କି" ବୋଲି ପଚାରିଲ। ଆମ ଘରର ପ୍ରଥା ଅନୁଯାୟୀ ପାଣିଦେଲି ଗୋଡ ଧୋଇବାକୁ ଏବଂ ସଉପ ଉପରେ ବସିବାକୁ କହିଲି। ମୋର ଠିକଣା କେମିତି ମିଳିଲା ଏବଂ କେମିତି ଆସି ପାରିଲ ବୋଲି ପଚାରିଲାରୁ ତୁମ କଥାଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି। Department Registerରୁ ମୋର ଠିକଣା ସଂଗ୍ରହ କରି କିପରି ନଦୀ ପାରହୋଇ ଆସିଲ, ମତେ ସବୁ କହିଲ। ସେହିଦିନ କିଏ ଜଣେ ମତେ ଏତେ ବେଶୀ ଭଲପାଉଥିବାର ମୁଁ ଅନୁଭବ କଲି। ଆଉ ଫେରିବା ବସ୍ ନଥିବାରୁ ସେଦିନ ଆମଘରେ ରହିବାକୁ ପଡ଼ିଲା। ସେଦିନର ଅନୁଭୂତି ବୋଧହୁଏ ଅନନ୍ୟ ଏବଂ ତାହା ଅକ୍ଷୁର୍ଣ୍ଣ ହୋଇ ମୋ ସହ ରହିଛି ଏବଂ ସାରା ଜୀବନ ରହିଥିବ ମଧ୍ୟ। ତୁମର ପରାମର୍ଶରେ ମୁଁ ପୁଣିଥରେ ବାଣୀବିହାର ଫେରି ଆସିଲି ଏବଂ ବେଶୀଦିନ ତୁମଠାରୁ ଅଲଗା ରହିବା ସମ୍ଭବ ହେଲାନାହିଁ । ସମସ୍ତ ସାଙ୍ଗମାନଙ୍କ ପରାମର୍ଶରେ ୧୯୭୬ ମସିହା ମାର୍ଚ୍ଚ ୮ ତାରିଖ ଦିନ ଆଚାର୍ଯ୍ୟ ବିହାରରେ ଏକ ନିରାଡମ୍ବର ପରିବେଶରେ ଆମର ବିଭାଘର ସମ୍ପୂର୍ଣ୍ଣ ହେଲା, କାରଣ ସେ ତିଥି ପରେ ଆଉ ବିଭାଘର ତିଥି ନଥିଲା ଏବଂ ସେହିଦିନ ତୁମ ସାନଭାଇ ରବିଙ୍କର ବିଭାଘର ସ୍ଥିର ହୋଇଥିଲା। ଆମ ବିଭାଘରରେ ମୋର ସାଙ୍ଗ ପ୍ରେମ ଡଲି, ଗୀତା ଏବଂ ନିହାରୀକାଙ୍କର ସହଯୋଗ ଅବିସ୍ମରଣୀୟ ଥିଲା। ବିଭାଘର ପରେ ଆମ ଜୀବନର ଦ୍ୱିତୀୟ ଅଧ୍ୟାୟ Bachellor flat no. 10 ରେ ଆରମ୍ଭ ହେଲା। ସେ ଅନୁଭୂତି ମଧ୍ୟ ଅନନ୍ୟ ପ୍ରଥମେ ଆମ ଘର ଭାବିଲେ ମନେପଡେ ଏକ single ଖଟ କିଛି ବହିପତ୍ର କେତୋଟି ହ୍ୟାଙ୍ଗରରେ ଟଙ୍ଗା ହୋଇଥିବା pant shirt। ଗୋଟେ ଚା suspan ଏବଂ କିଛି ବହି। ତା ସହିତ ମୋର ହଷ୍ଟେଲ୍‌ରେ ଥିବା କିଛି ଜିନିଷ ଯୋଡି ହେଲା। ଏହାହିଁ ଆମ ସଂସାର ଥିଲା ଏଇଠି ମୁଁ ତୁମଠାରୁ ପ୍ରତିଶ୍ରୁତି ମଧ୍ୟ ପାଇଥିଲି ମତେ କେବେ ଏକୁଟିଆ ହବାକୁ ଦବନି। ଠକି ଦେଲ ତମେ। ଏବେ ଆଖିର ଲୁହକୁ ସାଥିକରି ସାରା ଜୀବନ ତୁମ ବ୍ୟତୀତ ବଂଚିବାକୁ ପଡିବ। ଏକୁଟିଆ ନଛାଡ଼ିବାରି ଦେଉଥିବାର ପ୍ରତିଶ୍ରୁତି ମନେପଡେ। ବିଭାଘରେ ପରେ ଗାଁରେ ମତେ ଏକ ମାସ ରହିବାକୁ ନନା ବୋଉ (ଶାଶୁ ଶଶୁର) କହିଥିଲେ। ଆମେ ଗାଁକୁ ଗଲେ କାରଣ ତମେ ମତେ ଛାଡ଼ିଦେଇ ଆସିବାର ଥିଲା। ଦୁଇ ଦିନ ପରେ ତମେ ମତେ ଦେଖାକରି ବସ ଧରି ବାଣୀବିହାର ତିନିଟା ବେଳେ ଆସିବାକୁ ବସ୍‌ଷ୍ଟାଣ୍ଡ ଆସିଲ, ମାତ୍ର ସଂଧ୍ୟାବେଳେ ଗାଁ ଦାଣ୍ଡରେ ତୁମର ପାଟିଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ଘରେ ବୋଉଙ୍କୁ କହିଲ "ସତ୍ୟର ପରୀକ୍ଷା ଅଛି, ତେଣୁ ଏଠାରେ ରହିଲେ ସେ ପଢ଼ିପାରିବ ନାହିଁ। ମୁଁ ଭାବୁଛି ଏଥର ତାକୁ ନେଇଯିବି। ପରେ କେବେ ଆସିଲେ ରହିବ।" ଏହା କେବଳ ମତେ ଗାଁରେ ନଛାଡ଼ିବାର ବାହାନା ଥିଲା। ଏତେ ନିବିଡ଼ ସ୍ନେହ ଓ ପ୍ରେମ ମୁଁ ଜୀବନସାରା ଅନୁଭବ କରିଛି। ଆମ ପାରିବାରିକ ଜୀବନ ସାବଲୀଳ ଥିଲେ ମଧ୍ୟ, ଚାକିରୀ ଜୀବନରେ ତୁମପାଇଁ ବହୁତ ପ୍ରତିବନ୍ଧକ ଆସିଛି। ସବୁତକ ଆମେ ଦୁଇଜଣ ଏକାଠି ସମ୍ମୁଖୀନ ହୋଇଛେ। ତାହା ନଲେଖି ରହି ପାରୁନି।

୧୯୭୬ ମସିହା ଆମର ବିଭାଗର ସମୟରେ ତୁମେ ଗବେଷଣା ସହାୟକ ଭାବେ କାର୍ଯ୍ୟରତ ଥିଲ। ତାପୂର୍ବରୁ Deptt. ରେ Research Fellow ମଧ୍ୟ ଥିଲ। କେବଳ ଗବେଷଣା ପାଇଁ ଆକୃଷ୍ଟ ହୋଇ ପାଇଥିବା ଅନ୍ୟଚାକିରୀ ଗୁଡିକ ଯେପରି କେୟାର ସଂସ୍ଥାରେ କିମ୍ବାରେ ଯୋଗଦେଲ ନାହିଁ। ଅଳ୍ପ ଦରମା, ତାସହିତ ଅନିଶ୍ଚିତ ଚାକିରୀ ଥିଲେବି Research Fellow

ଭାବେ ର କାମକଲ। ଏହାପରେ ଗବେଷଣା ସହାୟକ ଚାକିରୀ ମିଳିଲା, ସେସମୟରେ ବାଣୀବିହାରରେ ପ୍ରତ୍ୟେକ Deptt ବିଭାଗରେ ଜଣେ ଜଣେ ଗବେଷଣା ସହାୟକ କାର୍ଯ୍ୟରତ ଥିଲେ ଏବଂ ସେମାନେ ବିଭାଗର ଗବେଷଣା ସହିତ ଜଡିତ ହେବା ସହିତ କ୍ଲାସନେବା ବିଭିନ୍ନ ସମୟରେ ସମାନ ମାନ ଆୟୋଜନ କରୁଥିଲେ, ଯାହାକି ଜଣେ ଆଧାପକଙ୍କର କାର୍ଯ୍ୟ ପଦ୍ଧତି ସହ ସମାନ ଥିଲା। କିନ୍ତୁ ଗବେଷଣା ସହାୟକ ଚାକିରୀରେ କୌଣସି ଭବିଷ୍ୟତ ନଥିଲା। ଏହି ସ୍ଥାଣୁକା ଭାଙ୍ଗିବାପାଇଁ ଗବେଷଣା ସହାୟକ ସଂଘ ଗଠନକଲ ଏବଂ ଯୋଗ୍ୟତା ଅନୁଯାୟୀ ଅଧାପକ ପଦବୀରେ ଅବସ୍ଥାପିତ ହେବାପାଇଁ ସଂଘର୍ଷ ଜାରି ରଖିଲ। ସେତେବେଳେ ତୁମର ନେତୃତ୍ୱ ପ୍ରସଂଶା ଯୋଗ୍ୟ ଯଦିଓ ଏଥିପାଇଁ ବହୁତ ପ୍ରଫେସରଙ୍କର ଚକ୍ଷୁଶୁଳ ହେବାକୁ ପଡିଲା। ନିଜର କର୍ତବ୍ୟ ନିଷ୍ଠା ଏବଂ ଯୋଗ୍ୟତା ପାଇଁ ଇତିହାସ ବିଭାଗରେ ଅଧାପକ ଭାବେ ନିଯୁକ୍ତି ମିଳିଲା।

ଏହାପରେ ତୁମ ଜୀବନରେ ଆସିଲା ସଂଘର୍ଷମୟ ଅଧ୍ୟାୟ। ତୁମର କାର୍ଯ୍ୟ ଦକ୍ଷତା ଏବଂ ଗବେଷଣା ମନୋବୃତି ପାଇଁ କତିପେୟ ଅଧାପକ ମାନଙ୍କର ଗାତ୍ର ଦାହ ହେଲା। ବହୁତ ଚିହ୍ନାଲୋକଙ୍କର ଅଚିହ୍ନା ମୁହଁ ସାମ୍ନାକୁ ଆସିଲା। ହେଲେ ସେସବୁ ପ୍ରତିବନ୍ଧକ ତୁମକୁ ଅଟକାଇ ପାରିଲା ନାହିଁ। ପ୍ରାଧାପକ ନିଯୁକ୍ତି ସମୟରେ ମଧ ଅନୁରୂପ ପ୍ରତିବନ୍ଧକ ସୃଷ୍ଟି କରାଗଲା। ଇଚ୍ଛା ନଥିଲେ ମଧ ଆମେ ହାଇକୋର୍ଟକୁ ସାମ୍ନା କଲେ, ମାତ୍ର କେତେଜଣ ଶୁଭାକାଂକ୍ଷୀ ବନ୍ଧୁ ଏବଂ ଭଗବାନଙ୍କ ଦୟାରୁ ସେ ସମୟ ମଧ ଅପସରି ଗଲା। ଶେଷରେ ଅବସର ସମୟ ହେବାବେଳକୁ ତୁମେ ବିଭାଗୀୟ ମୁଖ୍ୟଭାବେ ଅବସ୍ଥାପିତ ହୋଇ ଅବସର ଗ୍ରହଣ କଲ। ସେ ସମୟରେ ମଧ ଅନୁରୁପ ପରିସ୍ଥିତି ସୃଷ୍ଟି ହେଲା, ମାତ୍ର ସବୁ ପ୍ରତିବନ୍ଧକୁ ସାମ୍ନା କରି ପାରିଲ, ଯଦିଓ ତୁମେ ମାନସିକସ୍ତରରେ ବହୁତ ଆଘାତ ପାଇଛ। ତୁମକୁ ଭଲପାଉଥିବା ବହୁତ ବନ୍ଧୁ ଏବଂ ଛାତ୍ରମାନେ ତୁମର ମନୋବଳକୁ ଦୃଢକରିବାରେ ସହଯୋଗ କରି ପାରିଲେ। ସମୟାନୁବର୍ତିତା ଏବଂ ବନ୍ଧୁବତ୍ସଳତା ତୁମ ଜୀବନରେ ଅନ୍ୟଏକଦିଗ ଥିଲା। ଠିକ୍ ୧୦ଟା ସମୟରେ Deptt.ରେ ପହଚିଂବା ଏବଂ ଅପରାହ୍ନ ୫ଟା ପରେ ଘରକୁ ଫେରିବା ତୁମର ନିତିଗତ ଅଭ୍ୟାସ ଥିଲା। ସମୟ ପାଇଲେ ବିଭିନ୍ନ Deptt. କୁ ଯାଇ ବନ୍ଧୁମାନଙ୍କ ସହିତ ସାକ୍ଷାତ କରିବା ଏବଂ ସମସ୍ତଙ୍କ ସହ ସୁସମ୍ପର୍କ ରଖିବାକୁ ତୁମକୁ ବହୁତ ଭଲ ଲାଗୁଥିଲା। କେବେହେଲେ କାହା ବିରୁଦ୍ଧରେ କିଛି କହିବା ଏବଂ କରିବା ତୁମର ନିତି ବିରୁଦ୍ଧ ଥିଲା। ସମସ୍ତଙ୍କୁ ହସ ହସ ମୁହଁରେ ସ୍ୱାଗତ ଏବଂ ସମ୍ମାନ ମଧ କରୁଥିଲ। ତୁମର ଆବର୍ତମାନରେ ବିଭିନ୍ନ ଶ୍ରେଣୀର ବନ୍ଧୁମାନଙ୍କ ଠାରୁ ଆମ ପରିବାର ପାଇଁ ବହୁତ ସେମବେଦନାର ବାର୍ତା ଗାନ ଆସିଛି। ସେ ଆପଣାର ମୁଁ ସମସ୍ତଙ୍କ ପାଖରେ ମୁଁ କୃତଜ୍ଞ ଭାଗବତରେ ଅଛି -

"ପ୍ରାଣୀର ଭଲମନ୍ଦ ବାଣୀ
ମରଣ କାଳେ ତାହା ଜାଣି"

ପ୍ରକୃତରେ ତୁମେ ଜଣେ ସରଳ ନିଷ୍ପାପ ମଣିଷଟିଏ ଥିଲ। ଏକ ସାଧାରଣ ଜୀବନଯାପନ କରିବା ତୁମର ଲକ୍ଷ୍ୟଥିଲା । ଜୀବନ ସାରା ଓଡିଶ ଇତିହାସରେ ଗବେଷଣା ଏବଂ ଅଧାପନା କରି ମଧ ଓଡିଶା ଇତିହାସ କଂଗ୍ରେସରେ ତୁମକୁ କୌଣସି ପଦ ପଦବୀରେ ଅବସ୍ଥାପିତ କରାଯାଇ ନଥିଲା। ସେଥିପାଇଁ ତୁମେ ବ୍ୟଥିତ ନଥିଲ ହେଲେ ମୁଁ ସମୟ ସମୟରେ ଦୁଃଖିତ ହେଉଥିଲି। ସହଜଭାବେ ମତେ ବୁଝେଇ ଦେଉଥିଲ ଯେ ସେଥିପାଇଁ ଯାହା ଆବଶ୍ୟକ ତାହା ତୁମପାଖରେ ନାହିଁ। ଶେଷ ପର୍ଯ୍ୟନ୍ତ ମୁଁ ବୁଝି ପିରଲି ନାହିଁ ଯେ ଓଡିଶ ଇତିହାସରେ ଏତେ କାମକରି ମଧ କ'ଣ ତୁମ ପାଖରେ ନଥଲା। ଏକ ନିମ୍ନ ମଧବିତ ପରିବାରରୁ ଆସିମଧ ତୁମେ ନିଜର ଅଧବସାୟ ଫଳରେ ଗୌରବମୟ ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗର ମୁଖ୍ୟଭାବେ ଅବସର ଗ୍ରହଣ କଲ। ଗୋଟିଏ ଇଛା ପରିସ୍ଥିତିର ଚାପରେ ସମ୍ପୂର୍ଣ୍ଣ ହୋଇ ପାରିଲା ନାହିଁ ତାହା ଥିଲା Professorship ସେଥିପାଇଁ ମୁଁ ସବୁବେଳେ ଥଟ୍ଟାରେ କହୁଥିଲି ଇତିହାସ ଛାଡି ଚଳଚିତ୍ର ଉପରେ ଗବେଷଣା କରିବି। କିଛି ଅବଶୋଷ ରହିଗଲା।

ଗବେଷଣା ଏବଂ ଶିକ୍ଷାଦାନ ବ୍ୟତୀତ ଚଳଚିତ୍ର ଜଗତ ପ୍ରତି ତୁମର ଅହେତୁକ ଆକର୍ଷଣ ଥିଲା। ଏକଦା ଚ଼ଳଚିତ୍ର ଜଗତରେ ପ୍ରବେଶ କରିବା ପାଇଁ ଇଚ୍ଛା ମଧ୍ୟ ପୋଷଣ କରିଥିଲ। ବନ୍ଧୁ ସାଧୁ ମେହେରଙ୍କ ସହ Calcutta ରେ ଗଜାନନ ଜାଗିରଦାର ତୁମର interview ନେଇଥିଲେ ଏବଂ ତୁମେ Asst Director ପାଇଁ ମଧ୍ୟ select ହୋଇଥିଲ। କିନ୍ତୁ ପର ମୁହୁର୍ତ୍ତରେ ମନ ପରିବର୍ତ୍ତନକରି ଗବେଷଣା ପ୍ରତି ଆକୃଷ୍ଟ ହେଲ। ପୁରୁଣା ସିନେମା, ଚ଼ଳଚିତ୍ର ଗୀତ। Hero ଏବଂ Heroinଙ୍କ ବିଷୟରେ ବହୁତ ଜ୍ଞାନ ତୁମର ଥିଲା। ତୁମର ଏହି ଆଗ୍ରହ ପିଲାମାନଙ୍କ ଉପରେ ପ୍ରଭାବ ପକେଇ ପାରିଥିଲା। ଶେଷ ଜୀବନ ପର୍ଯ୍ୟନ୍ତ ଲେଖାଲେଖି ବ୍ୟତୀତ ପ୍ରତିଦିନ ପୁରୁଣା ସଂଗୀତ ଶୁଣିବା ଏବଂ ପୁରୁଣା କେମିତି ଦେଖିବା ଜସର ସଭ୍ୟା  ବୋଧହୁଏ ଏଥିପାଇଁ ସାନପୁଅ Cenema Industry ରେ କାମ କରିବାକୁ ପସନ୍ଦ କଲା।

ସାଂସାରିକ ଜୀବନ ତୁମର ଅତୀବ ସରଳ, ଅହଂକାର ଶୂନ୍ୟ ଏବଂ ଦାୟିତ୍ୱ ସମ୍ପର୍ଣ୍ଣ ଥିଲା। ଏକ ନିମ୍ନ ମଧ୍ୟବି□ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇ ନିଜର ସମସ୍ତ କ□ବ୍ୟ ସୁଚାର ରୂପେ ସମ୍ପାଦନ କରିବା ପାଇଁ ଚ଼େଷ୍ଟା କରୁଥିଲ। ଜଣେ ଆଦର୍ଶ ପୁତ୍ର, ଭାଇ ଏବଂ ସ୍ନେହୀ ପିତା ଭାବରେ ତୁମେ ଜୀବନସାରା କାର୍ଯ୍ୟ କରି ଆସିଛ ଯଦିଓ ଆମକୁ ବହୁତ ବାଧା ବିଘ୍ନ ଦେଇ ଗତି କରିବାକୁ ପଡ଼ିଛି। ତୁମର ନିଷ୍କଳଙ୍କ ଚରିତ୍ର ପାଇଁ ବିଶେଷତ ସ୍ତ୍ରୀ ହିସାବରେ ମୋ ହୃଦୟରେ ତୁମର ସ୍ଥାନ ଅନନ୍ୟ। ପରସ୍ପର ପ୍ରତି ସ୍ନେହ, ପ୍ରେମହିଁ ଆମକୁ ୪୭ ବର୍ଷ କାଳ ସମାନ ଅଶ୍ଲେଷରେ ବାନ୍ଧିରଖି ଥିଲା। ଜଣେ ଅନ୍ୟର ପରିପୁରକ ଥିଲେ, ଜୀବନରେ ବହୁତ ଉତ୍‌ଥାନ ପତ୍ତନ ମଧ୍ୟ ଦେଇ ଗତିକରୁ ଥିଲେ ମଧ୍ୟ କେବେ ମନାନ୍ତର ହୋଇ ନାହିଁ ବରଂ ପରସ୍ପର ପ୍ରତି ଥିବା ସମ୍ମାନ ବୋଧ ଏବଂ ବିଶ୍ୱାସ ଆମ ଭିତରେ ସମ୍ପର୍କକୁ ମଜଭୁତ କରି ଥିଲା। କୌଣସି ସ୍ଥାନରେ ମୋର ଆତ୍ମ ମର୍ଯ୍ୟାଦା ଯେପରି ନ୍ୟୁନ ନହୁଏ ସେଥିପାଇଁ ତୁମେ ପ୍ରାଚୀର ସଦୃଶ ଥିଲ। ସମାନ କ୍ଷେତ୍ରରେ ମୁଁ ମଧ୍ୟ ତୁମ ମତକୁ କେବେ ହେଲେ ଅସମ୍ମାନ କରିନାହିଁ। ମୁଁ ସବୁବେଳେ ଅନୁଭବ କରୁଥିଲି ମୋର ଅନୁପସ୍ଥିତି ତୁମକୁ ଅସହ୍ୟ ବୋଧ ହେଉ ଥିଲା। Collegeରୁ ଫେରିବାର ଟିକେ ବିଳମ୍ବ ହେଲେ କିମ୍ବା କେଉଁଠିକୁ ଯିବାକୁ ହେଲେ ତୁମର ମାନସିକ ଆଘାତ ମତେ ବ୍ୟତିବ୍ୟସ୍ତ କରିଦେଉଥିଲା। ସବୁଦିନ ଦୁଇଟି ଚା କପରୁ, ଏବେ ଗୋଟିଏ ନୀରବରେ ଲୁହ ଝରାଉଛି । ସେ ବେଦନା ଅତ୍ୟନ୍ତ ଅସହ୍ୟ, ମୋର ଉପସ୍ଥିତିରେ ତୁମର ସବୁଖୁସି ଥିଲା, ଏବେ ତୁମର ଅନୁପସ୍ଥିତ ମୁଁ କେମିତି ସହ୍ୟ କରିବି ? ତୁମକୁ ଛାଡି ମୋର ଦୁନିଆ ନାହିଁ।

ଶେଷରେ କେତୋଟି କଥା ମୁଁ ନଲେଖି ରହିପାରୁନାହିଁ। ମୋର ବିଶ୍ୱାସ ହେଉଛି ତୁମର ଶେଷଯାତ୍ରା ବୋଧହୁଏ ତୁମକୁ ଜଣା ପଡି ଯାଇଥିଲା। ୨୦୨୨ ଜୁନରେ ମୋର ଜନ୍ମଦିନର ଆୟୋଜନ ତୁମେ କରିଥିଲ ଏବଂ ଶେଷରେ ମତେକହିଲା - ଏଇଟା ଆମ ଦୁଇଜଣଙ୍କର ଶେଷ ଜନ୍ମଦିନ। ଆଉ ଜନ୍ମଦିନ ହେବ ନାହିଁ। ହଠାତ୍ ଏମିତି କାହିଁକି କହିଲ ମୁଁ ଏବେ ଭାବୁଛି। ଦ୍ୱିତୀୟତଃ ଜୁନ୍ ୬ ତାରିଖ ଦିନ ମୋର ପୁତୁରାର ଗାଁରେ ବ୍ରତଘର ହେଉଥିଲା। ମୁଁ ମାତ୍ର ଗୋଟିଏ ଦିନପାଇଁ ସେଠାକୁ ଯିବାକୁ ଚାହିଁଲି। ତୁମେ କେବଳ ଦୃଢସ୍ୱରରେ କହିଲ - ମୁଁ ଛାଡିବି ନାହିଁ - ତୁମେ ଯିବନାହିଁ। କିନ୍ତୁ ତାର ୨୦ ଦିନପରେ ତୁମେ ସବୁଦିନ ପାଇଁ ଚାଲିଗଲ। ଆଉ ଗୋଟିଏ କଥା ଆମେ ବସିକଣ କଥାବାର୍ତା ହେଉଥିଲେ ତୁମେ ହଠାତ୍ କହିଲ - ମୁଁ ଚାଲିଯିବି - ମୁଁ କିଛି ବୁଝିନ ପାରି ପଚାରିଲି “କୁଆଡେ ଯିବ ? ତୁମେ ଗଲେ ମୁଁ ବି ତୁମ ସାଂଗରେ ଯିବି। ତୁମେ ମତେ ଚାହିଁ ହସିଦେଲ । ଯେଉଁ ହସ ମ୍ତେ ଆମ ଗାଁରେ ତୁମପ୍ରତି ଆକର୍ଷିତ କରିଥିଲା, ସେଇ ହସମତେ ତୁମ ଠାରୁ ଦୂରେଇ ଦେଉଛି, ଏହା ମୁଁ ଏବେ ବୁଝୁଛି। ଆଜି ସାମାଜିକ କ୍ଷେତ୍ରରେ ମୋର ଯାହାକି ସ୍ଥିତି ସେସବୁ ତୁମରୁ ପାଇଁକି ସମ୍ଭବପର ହୋଇ ପାରିଛି। ଜୀବନରେ ଜଣେ ଅଧ୍ୟାପିକା ହେବାର ସ୍ୱପ୍ନ କେବେବି ଦେଖି ନଥିଲି। ହିଷ୍ଟ୍ରି, ପଲିଟିକାଲ ସାଇନ୍‌ସ ନେଇ କୌଣସି ପ୍ରଶାସନିକ କ୍ଷେତ୍ରରେ ଚାକିରୀ କରିବା ମୋର ଉଦ୍ଦେଶ୍ୟ ଥିଲା କାରଣ ସ୍ୱଭାବତଃ ସ୍ୱଚ୍ଛ କଥା କହୁଥିବା ହେତୁ ଅଧ୍ୟାପିକା ଚାକିରୀ କରିବା ମୋ ପାଇଁ ବହୁତ କଷ୍ଟାସାଧ

ବୋଲି ଭାବିଥିଲି। ବିବାହପରେ ବ୍ୟାଙ୍କ ପରୀକ୍ଷାରେ ମଧ୍ୟ କୃତକାର୍ଯ୍ୟ ହେଲି, ଉଦଳାରେ ପୋଷ୍ଟି ହେଲା । ଆମର ଆର୍ଥିକ ପରିସ୍ଥିତି ସେ ସମୟରେ ବିଶେଷ ଭଲ ନଥିଲା, ମାତ୍ର ତୁମେ ଗୋଟିଏ ପଦ କଥା କହିଲ "ଯଦି ଟଙ୍କା ଚାହଁଛ ତେବେ ଯାଅ, ଯଦି ପରିବାର ଚାହୁଁଚ ଯାଅ ନାହିଁ।" ତା ପରେ ମୁଁ କେବେ ଅନ୍ୟ କୌଣସି ଚାକିରି କଥା ଭାବି ନିହଁ - କାରଣ ତୁମେ ତାହା ଚାହୁଁ ନଥିଲା। ଜୀବନ ସାରା ଆମେ ପରସ୍ପରର ମତକୁ ସମ୍ମାନ ଦେଇ ପରସ୍ପରର ପରିପୁରକ ହୋଇ ରହିଲେ। ହେଲେ ଜୀବନର ଶେଷ ପାହାଚରେ ତୁମେ ଏକା ଛାଡି କେଉଁ ଅଫେରା ପଥର ପଥିକ ହୋଇଗଲ। ଥରେ ବି ଭାବିଲ ନାହିଁ। ଜୀବନସାରା ନିର୍ଭର କରୁଥିବା ସାଥିଟି ଜୀବନର ଶେଷ ସଂନ୍ଧ୍ୟାରେ କିପରି ଚାଲି ପାରିବ। ବୋଧହୁଏ ବିଧିର ବିଧାନ ମୋ ପାଇଁ ଏତିକି ଲେଖା ଅଛି। ବିଶ୍ୱମୟଙ୍କୁ ପ୍ରାର୍ଥନା କରୁଛି ତୁମେ ଯେଉଁଠି ଅଛ ତୁମର ନିଷ୍ପାପ ଆତ୍ମା ଶାନ୍ତିରେ ରହୁ।

ଇତି ତୁମର ଅତି ଆଦରର 'ସତ୍ୟ'





